

# ଅଭିନନ୍ଦନ ପତ୍ର

ଡିସେମ୍ବର ୯, ୧୯୭୯

## ଶ୍ରୀମତୀ ପଙ୍କଜିନୀ ଦାସ

ଆଧୁନିକ ଓଡ଼ିଆ ସାହିତ୍ୟକୁ ବଳିଷ୍ଠ ଓ ଋଦ୍ଧିମଂତ କରିବା ଦିଗରେ ସୃଜନଶୀଳ ଶିଶୁ ସାହିତ୍ୟରେ ମନୋନିବେଶ କରି ଆପଣ ଯେଉଁ କଳା ଓ କୃତିତ୍ୱ ପ୍ରଦର୍ଶନ କରିଛନ୍ତି, ଏଥିପାଇଁ ଆଜିର ଏଇ ଶୁଭ ଅବସରରେ ଆମେ 'ଚଳପଥ ଓ ନିଖିଳ ଉତ୍କଳ ଶିଶୁମେଳା' ପକ୍ଷରୁ ଆପଣଙ୍କୁ ସମ୍ମାନିତ କରୁଛୁ ।

| | | |
|---|---|---|
| **ଉପେନ୍ଦ୍ର ତ୍ରିପାଠୀ** | **ସ୍ୱାକ୍ଷର** | **ହଳଧର ଧୀର** |
| ମୁଖ୍ୟ ଅତିଥି | ସଭାପତି | ଆବାହକ |

ଲେଖିକା ଶ୍ରୀମତୀ ପଙ୍କଜିନୀ ଦାଶଙ୍କର ଜନ୍ମ ୧୯୩୩ ମସିହା ଫାଲ୍ଗୁନ ଗଣେଶ ଚତୁର୍ଥୀରେ, ଢେଙ୍କାନାଳର ମାଳପୁର ଗ୍ରାମରେ । ପିତାଙ୍କ ନାମ ଶ୍ରୀ ଲଳିତ ମୋହନ ନନ୍ଦ ଓ ମାତାଙ୍କ ନାମ ଶ୍ରୀମତୀ ମନୋରମା ନନ୍ଦ । ପିତାମହ ଶ୍ରୀ ରାମଚନ୍ଦ୍ର ଭଞ୍ଜ ବିନୋଦ ମଧ୍ୟ ଜଣେ ପ୍ରସିଦ୍ଧ କବି ଥିଲେ ।

ଶ୍ରୀମତୀ ପଙ୍କଜିନୀ ଦାଶଙ୍କର ଲେଖିକା ଜୀବନ ୧୯୬୫ ମସିହାରୁ ଆରମ୍ଭ । ବିଭିନ୍ନ ପତ୍ର ପତ୍ରିକାରେ ଓ ଆକାଶ ବାଣୀରେ ତାଙ୍କର ଗଳ୍ପ, କବିତା, ରମ୍ୟରଚନା, ଶିଶୁ ମଜା ଗଳ୍ପ ପ୍ରକାଶିତ ଓ ପ୍ରସାରିତ । ସେଥିରୁ ମଧ୍ୟ କେତେକ ବିଭିନ୍ନ ପ୍ରତିଯୋଗିତାରେ ପୁରସ୍କୃତ । ୧୯୭୯ ମସିହା ଡିସେମ୍ବର ୯ ତାରିଖରେ "ଜନପଥ" ତରଫରୁ ଆୟୋଜିତ "ନିଖିଳ ଉତ୍କଳ ଶିଶୁମେଳା" ରେ ଶ୍ରେଷ୍ଠ ଶିଶୁ ଲେଖିକା ହିସାବରେ ମାନ ପତ୍ର ପାଇ ସେ ସମ୍ମାନିତା ହୋଇଅଛନ୍ତି । ବିଶେଷତଃ ରମ୍ୟରଚନା ଲେଖି-ବାରେ ସେ ସିଦ୍ଧହସ୍ତା । ସେ ଏକା ଧାରରେ ଜଣେ ସୁଲେଖିକା, ସୁ ଗାୟିକା, ସମାଜ ସେବିକା ଓ ସୁଗୃହିଣୀ ଅଟନ୍ତି । ବିଭିନ୍ନ ନାରୀ କଲ୍ୟାଣ ଅନୁଷ୍ଠାନ ତାଙ୍କ ନେତୃତ୍ୱରେ ପରିଚାଳିତ ହୋଇଛି । ନିକଟରେ ତାଙ୍କର ରମ୍ୟରଚନା ସଂକଳନ "ପରାଜିତା ସୂର୍ପଣଖା", କବିତା ସଂକଳନ "ଉନ୍ମୋଚନ କରି ମୋର ତୃତୀୟ ନୟନ" ଓ "ଅଜାଙ୍କ ମଜା କାହାଣୀ" ର ଦ୍ୱିତୀୟ ଭାଗ ପ୍ରକାଶିତ ହେବାକୁ ଯାଉଛି ।

ସେ ଆଠଗଡ଼ ନିବାସୀ ପୂର୍ତ୍ତବିଭାଗ ଇଞ୍ଜିନିୟର ଶ୍ରୀ କୁଞ୍ଜ ବିହାରୀ ଦାଶଙ୍କର ପତ୍ନୀ । ତାଙ୍କର ତିନି ପୁତ୍ର ଓ ତିନି କନ୍ୟା ସମସ୍ତେ ନିଜ ନିଜ କ୍ଷେତ୍ରରେ ପ୍ରତିଷ୍ଠିତ ।

—ପ୍ରକାଶକ

ଶ୍ରୀମତୀ ପଙ୍କଜିନୀ ଦାଶଙ୍କ ଲିଖିତ

# ଅଜାଙ୍କ ମଜା କାହାଣୀର

## ପ୍ରଥମ ସିରଜ୍‌ରେ ଥିବା ଗଳ୍ପମାଳା



---


ଗୀତାଞ୍ଜଳୀ ପବ୍ଲିକେଶନ କାମାକ୍ଷାନଗର, ଢେଙ୍କାନାଳ ଦ୍ୱାରା ପ୍ରକାଶିତ
ଓ ତ୍ରିପାଠୀ ପ୍ରିଣ୍ଟର୍ସ, କାମାକ୍ଷାନଗରରେ ମୁଦ୍ରିତ ।

ପ୍ରଥମ ସଂସ୍କରଣ—ଦଶହରା ୧୯୮୦

ମୂଲ୍ୟ—ଏକ ଟଙ୍କା ପଚାଶ ପଇସା

# ନଣ୍ଡା ଅଜାଙ୍କ ଅଣ୍ଡା ଖିଆ

ନପଠ ମଫସଲ ମଣ୍ଡାପୁରରେ "ନଣ୍ଡା ଅଜା"ଙ୍କ ଘର । ଅଜା ତାଙ୍କ ଜୀବନରେ ସହର ବଜାର ଦେଖି ନଥିଲେ । ପ୍ରଥମ କରି ଝିଅ ଘରକୁ ଭୁବନେଶ୍ୱର ଆସିଛନ୍ତି । ଚାରିଆଡେ ଏତେ ବଡ଼ ବଡ଼ କୋଠା ବାଡ଼ି, ଲମ୍ବା ଲାଇଟ, ଗୋଲ ଲାଇଟର ଚକମକ ଆଲୁଅ, ଅଜାଙ୍କୁ ଖାଲି ତାଜୁବ ଲାଗୁଥାଏ । ଟିପି ଦେଲେ ଆଲୁଅ ଚିପି ଦେଲେ ପାଣି ମହାନଦୀ ପରି ବୋହି ଯାଉଛି, ଅଜାଙ୍କୁ ଭାରି ମଜା ଲାଗୁଥାଏ ।

କିନ୍ତୁ କଣ ହେବ ଅଜାଙ୍କୁ ଏଠିକା ଖାଇବାଟା ରୁଚୁ ନଥାଏ । ତାଙ୍କ ଗାଁରେ କିଛି ନ ହେଲେ ଶାଗ ଟିକେ ଚାମଡ଼ା ଶୁଖୁଆ ଦୁଇଟା ଖରପୋଡା ହେଲେ ବେଲ୍ ବେଲ୍ ପଖାଳ ଠୁଙ୍କି ଦେଉଥିଲେ ଆଉ ଏଠି ଭାତ ଗୁଡ଼ାକ କି ଗମଗ ଗନ୍ଧ ଆଉ ତରକାରୀ ପସ କଥା ଗୁଡ଼ା । ପରିବା ପତ୍ର ତ ସୁନା ଦର ପରି ବଢ଼ି ବଢ଼ି ଚାଲିଛି । ମାଛ ମାଉଁସ ପାଖରେ କିଏ ପଶିବ ଅମୂଲମୂଲ ! ସହରେ ତ ଝିଅଟି ବହୁ କୁଟୁମ୍ବୀ । କିରାଣୀ ଚାକିରିରେ କୋଉଠୁ ପଇସା ଅଣ୍ଟିବ । ଏଠିକୁ ଆସିଲା ଦିନୁ ପାଟିରେ ଆଇଁସ ପାଣି ବାହାରିନ । ପାଟି ଅରୁଚି ଧରିଲାଣି । ନାତି ଖାଲି ସକାଳ ଖରାସାରୁ ଡାଲମା ଘାଣ୍ଟ । ନାତି, ନାତୁଣୀ ଗୁଡ଼ା ନିତି କଣ କୁକୁଡ଼ା ଅଣ୍ଡା ଭଜା କରି ଖାଉଛନ୍ତି । କେମିତି କା ଦରବ ସେ କେଜାଣି ? ସାନ ନାତିଟାକୁ ଚପ୍ ଚପ୍ ପଚାରୁଥିଲେ ଟୋକାଟା ଭାରି ସୁଆଦ ବୋଲି କହୁଛି । କେମିତି ଟିକେ ଚାଖନ୍ତେ ନା । କଣ କରିବେ ବ୍ରାହ୍ମଣ ହୋଇ କେମିତି ସେ ଅଖାଦ୍ୟ ଗୁଡ଼ାକ ଖାଇବେ । ଝିଅ ଜୋଇଁ କଣ ଭାବିବେ । ତାଙ୍କର ଆଗରେ ଜୋଇଁଟା ତାଙ୍କର ପୂଜା ପାଠ କେତେ କରି ଆଇଁସ ଛୁଁ ନ ସେ କେମିତି ଅଣ୍ଡା ଖାଇବା କଥା କହିବେ ।

ସେତେବେଳେ ଖରଖରୀ ନାତୁଣୀଟା ଥାଳଆରେ ଧୋବ ଫର ଫର ଅଣ୍ଡା ସିଝା ଗୁଡାକ ତାଙ୍କୁ ଦେଖାଇ ମସ୍ତା ପିଠା ଭଳି ଖାଇଯାଏ । ଅଜାଙ୍କ ଭଙ୍ଗା ଦାନ୍ତ ବାଟେ ନାଳ ଗୁଡ଼ାକ ଠକ୍‌ଠକ୍ ବୋହି ପଡ଼େ । ପାଟିଟା ଟକ୍ ଟକ୍ କରେ ଟିକିଏ ଚାଖି ଦେବାକୁ । ମନକଥା ମନରେ ମାରି ଚୁପ୍ ହୋଇ ମୁଣ୍ଡ କାନ ଆଉଁସି ରହିଯାନ୍ତି । ତାଙ୍କ ଗାଁରେ ବ୍ରାହ୍ମଣମାନେ ଅଣ୍ଡା ଛୁଇଁଲେ ଗାଧୋଇ ପଇତା ଲଗାନ୍ତି । ସେଠି ଅଣ୍ଡା ଖାଇବ କିଏ ?

ଦିନେ ନଣ୍ଡା ଅଜାଙ୍କୁ ଅଣ୍ଡା ଖାଇବାର ସୁଯୋଗ ଯୁଟିଗଲା । ନାତି ନାତୁଣୀଏ ସ୍କୁଲରୁ ଆସି ଖାଇବେ ବୋଲି ଝିଅ ତାଙ୍କର ଅଣ୍ଡା ଗୁଡ଼ାଏ ସିଝେଇ ସାଇତି ରଖିଥିଲେ । ହଠାତ୍ ଝାଡ଼ା ଲାଗିବାରୁ ଲୁଗା ପାଲଟି ପାଇଖାନା ଗଲେ । ଦାଣ୍ଡ ଘର ଖଟ ଉପରେ ଅଜା ଗଡ଼ଉଛନ୍ତି ଡେଉଁଥିଲେ । ସେମିତି ଦେଖେଇ ଘର ଆଡେ ନଜର ପଡ଼ୁଛି, ଅଜା ଦେଖିଲେ ଥାଳଆଟିରେ ଧୋବ ଫର ଫର ଗୁଡ଼ାଏ ଅଣ୍ଡା ଥୁଆ ହୋଇଛି । ଘର ଆଡ଼କୁ ଚାହିଁ ନେଲେ କେହି କୁଆଡ଼େ ନାହାଁନ୍ତି । ଖଟ ଉପରୁ ଥରି ଥରି ଉଠି ବାଡ଼ ଚପିଚପି ବେଗେଇ ଘରେ ପଶିଗଲେ । ଥାଳଆରୁ ଅଣ୍ଡାଟିଏ ଆଣି ପାଟିରେ ପୁରାଇ ଦେଉଛନ୍ତି ଠିକ୍ ଏତିକି ବେଳକୁ ପଛଆଡ଼େ, ବଡ଼ ନାତି ସ୍କୁଲରୁ ଫେରି ଡାକ ମାରିଲା ଅଜା କଣ କରୁଛ ? ବୁଢ଼ା କଣ କରିବେ, ପାଟିରେ ଅଣ୍ଡା ପଶିଛି ତରତର କରି କାନ୍ଥରୁ ଗାମୁଛାଟା ଟାଣି ଆଣି ମୁହଁରେ ଘୋଡ଼େଇ ଦେଇ ଉହୁଁ ଉହୁଁ ହୋଇ ଖଟ ଉପରକୁ ଯାଇ ଶୋଇ ପଡ଼ିଲେ । ନାତି ପଛେ ପଛେ ଆସି ଦେଖିଲା ବେଳକୁ ଅଜାଙ୍କ ଗାଲ ମସ୍ତା ପିଠା ପରି ଫୁଲିଛି । ଅଜା ନାତିକୁ ଦେଖି ବଢ଼ି ଉହୁଁ ଉହୁଁ ହୋଇ ଗଡ଼ିଲେ । ନାତି ବିଚରା ଡରିଯାଇ ବୋଉକୁ ଡାକ ପକେଇଲା "ବୋଉ ଧାଇଁଆ ଅଜାଙ୍କ ଗାଲରେ କେତେ ବଡ଼ ଆବୁ, ଅଜା ବିକଳରେ ଛଟପଟ ହୋଇ ଗଡ଼ୁଛନ୍ତି । ବୋଉ ବିଚରା ପାଇଖାନାରେ ଦରହଗା ହୋଇ ପୁଅର ଡାକ ଶୁଣି ଧାଇଁ ଆସିଲେ । ଆସି ଦେଖିଲେ ଆରେ ସତେତ ବାପାଙ୍କ ଗାଲ ଖବ୍ ଜୋରରେ ଫୁଲିଛି । ଝିଅକୁ ଦେଖି ଅଜା ଆହୁରି ଜୋରରେ ଉହୁଁ ଉହୁଁ ଓ ବାତ ମାରିଲା ପରି ଗଡ଼େଇ ଡଡ଼େଇ ହେଲେ । ଝିଅ ବିଚରା ବାପାଙ୍କ ବିକଳ ଦେଖି ବାହୁନା ଆରମ୍ଭ କରିଦେଲେ । ମୁଁ କଣ

କରିବ ଲୋ ମା·· ମୋ ବାପାଙ୍କର କଣ ହେଲା ଲୋ ମା ··। ଟିକିଗୁଡ଼ାକ ଝିଲ୍ଲିକୁ ଘେରି ବେଁଡ଼ କାନ୍ଦୁଥିବାର ଦେଖି ସମସ୍ତେ ଭେଁ ଭଁ ହୋଇ ରଡ଼ି ପକାଇଲେ । କାନ୍ଦ ବୋବାଳି ଶୁଣି ପଡ଼ିଶାର ଲୋକ ଆସି ଗଦା ହୋଇଗଲେ । ବୁଢ଼ାକୁ ଦେଖି କିଏ କହିଲା ଡ଼ାକ୍ତର ଡ଼ାକ, କିଏ କହିଲା ଡାକ୍ତରଖାନା ନେଇଯାଅ । ତା ଭିତରୁ କିଏ ଜଣେ ଦଉଡ଼ି ଯାଇ ଅଫିସରେ ଜୋଇଁ ଦଣ୍ଡଧର ବାବୁଙ୍କୁ ଖବର ଦେଲା । ଦଣ୍ଡଧର ବାବୁ ସେ ଆଡ଼୍ ଆମ୍ବୁଲାନସ୍ ଗାଡ଼ି ଧରି ହାଜର । ବୁଢ଼ା ଡ଼ାକ୍ତରଖାନା ନାଁ ଶୁଣି ହାତ ଗୋଡ଼ ମୁଣ୍ଡ ହଲାଇ ଯେତେ ନାହିଁ ନାହିଁ କଲା କେହି ଶୁଣିଲେନି । ଠେକାଠେକ କରି ନେଇ ଗାଡ଼ି ଭିତରେ ଶୁଆଇ ଦେଲେ । ଦଣ୍ଡଧର ବାବୁ ତାକୁ ଧରି ଡ଼ାକ୍ତରଖାନାରେ ପହଞ୍ଚିଲେ । ଡ଼ାକ୍ତର ବାବୁଙ୍କୁ ତାଙ୍କ ଶଶୁରଙ୍କ ଗାଲରେ ଆବୁ ବିଷୟ କହିଲେ । ଡ଼ାକ୍ତରବାବୁ ବେହେରାମାନଙ୍କୁ ଆଦେଶ ଦେଲେ ନଣ୍ଡା ଅଜାଙ୍କୁ ଅପରେସନ୍ ଟେବୁଲ ଉପରକୁ ନେବା ପାଇଁ । ବେହେରାମାନେ ତାଙ୍କ ହାତ ଗୋଡ଼ ବାନ୍ଧି ଦେଇ ଟେବୁଲ ଉପରେ ନେଇ ଶୁଆଇ ଦେଲେ । ଡ଼ାକ୍ତର ବାବୁ ସଜ ବାଜ ହୋଇ ଯନ୍ତ୍ରପାତି ଛୁରୀ ପ୍ରଭୃତି ଧରି ଅପରେସନ କରିବେ ବୋଲି ଟେବୁଲ ପାଖରେ ପହଞ୍ଚିଗଲେ । ଯେତେବେଳେ ଅଜାଙ୍କ ଗାମୁଛା ଘୋଡ଼ିଆ ଗାଲରେ ହାତ ମାରିଦେଲେ ଅଜା ଭୟରେ ପାଟି ଭିତରୁ ଫୁ କରି ଅଣ୍ଡାଟାକୁ ବାହାର କରିଦେଇ ଇଲୋ ବୋପା ଲୋ ବୋଲି ରଡ଼ିଟାଏ କରି ଟେବୁଲ ଉପରୁ ଡ଼େଇଁଟାଏ ମାରିଲେ । ତାଙ୍କ ଦୁଇ ଗୋଡ଼କୁ ଜାବୁଡ଼ି ଧରିଥିବା ବେହେରାଟି ତାଙ୍କ ଗୋଇଠା ମାଡ଼ରେ ପଛକୁ ଫୋପାଡ଼ି ହୋଇ ପଡ଼ିଲା । ଅଜାଙ୍କ ପାଟି ଭିତରୁ ଅଣ୍ଡାଟା ବାହାରିବା ଦେଖି ଡ଼ାକ୍ତରଖାନାର ଯେତେକ ଲୋକ ହୋ···ହୋ···ହୋଇ ହସିଲେ । ବିଚାରା ଦଣ୍ଡଧର ବାବୁ ଅପମାନରେ ଜଳିଯାଇ ଲାଜରେ ପଳାଇ ଆସିଲା ବେଳକୁ ଦେଖିଲେ ତାଙ୍କ ଶଶୁର ନଣ୍ଡା ଅଜା ରାସ୍ତାରେ ଏକ ମୁହାଁ ହୋଇ ଧାଇଁଛନ୍ତି ବସଷ୍ଟାଣ୍ଡ ଆଡ଼କୁ ।



---

(କୁନି ରାଇଜ ପତ୍ରିକାରେ ୧୯୭୪ ମସିହା ଅକ୍ଟୋବର ମାସରେ ପ୍ରକାଶିତ)

# ହରି ଅଜାଙ୍କ ହୋରି ଖେଳ

ଦୋଳ-ପୂନେଇଁ ବାସି ହୋରି ଖେଳ । ହରି ଅଜା ରାତି ନପାହୁଣୁ ଟ୍ରଙ୍କ ବାକ୍ସ ଦରଣ୍ଡା ଦରଣ୍ଡି କରି ଖଣ୍ଡେ ଛିଣ୍ଡା ଧୋତି ଓ ଖଣ୍ଡେ ଚିରା ଫତେଇ ବାହାର କରି ଦେହରେ ଭିଡ଼ିଇ ଦେଇ ଦାଣ୍ଡକୁ ବାହାରି ଚଢ଼ିଲେ । ସାଇର ଲଙ୍ଗଳା ଛୁଆଠାରୁ ଗଜା ଟୋକା ପର୍ଯ୍ୟନ୍ତ ହୋରି ଖେଳିବେ ବୋଲି ରାତିରେ ନିଦ ନାହିଁ । ଦିନକ ଆଗରୁ ମା'ମାନଙ୍କ ପାଖରେ କନ୍ଦାକଟା ଗାଳି ମାଡ଼ ଖାଇ ପଇସା ନେଇ ରଙ୍ଗ ବେରଙ୍ଗ ଫଗୁ ପାଣିରଙ୍ଗ, ମୁଣ୍ଡଫଟା ରଙ୍ଗ, କିଣି ସଜାଡ଼ି କରି ରଖିଥାନ୍ତି । କିଏ ପିଚ-କାରି କିଏ ବୋତଲରେ ନଡ଼ା ମେଞ୍ଚା ଦେଇ ରଖିଥାଏ । ଯେମିତି ଅଜାଙ୍କ କୁହାଟ ଶୁଣିଛନ୍ତି ଘରୁ ପିମ୍ପୁଡ଼ି ବାହାରିଲା ପରି ଦଳ ଦଳ ହୋଇ ବାହାରିଲେ । ସମସ୍ତେ ଅଜାଙ୍କୁ ଘେରିଯାଇ ମନଇଚ୍ଛା ରଙ୍ଗ ବୋଳିଲେ । ଏକା ଥରେ ଦଶ ବାର ପିଚକାରିରେ ତାଙ୍କ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ଓଦା କରିଦେଲେ । କିଏ ମୁଣ୍ଡରେ ଗୁଡ଼ପେଲ ରଙ୍ଗ ବୋଳିଦେଲା ତ କିଏ ମୁହଁ ସାକ ଆଲକାତରା ବୋଳି ଦେଲା । ଅଜା ଠିକ୍ ଗୋଟିଏ ବଡ଼ ଲଙ୍କାପୋଡ଼ା ହନୁମାଙ୍କଡ ବନିଗଲେ । ସେଥିରେ ତାଙ୍କର ଭାରି ଖୁସି । ଚାଲିଲା ଖେଳ ଗାଁ ସାରା ବୁଲି ବୁଲି ମନ ଇଚ୍ଛା ଖେଳିଲେ ଯିଏ ରଙ୍ଗ ଡରରେ ଘରେ ଲୁଚିଥାଏ ଅଜା ଚାଲ ଉପରେ ଚଢ଼ି ଘର ଭିତରକୁ ଡେଇଁ ପଡ଼ି ଆଣୁଥିଲେ । କିଏ ଗାଳି ଦେଉଥିଲା ତ କିଏ ମାରି ଗୋଡ଼ାଉଥିଲା । ସେଥିପ୍ରତି ଅଜାଙ୍କର ଟିକେ ଖାତିର ନଥାଏ ।

ଦ୍ୱିପହର ଗଡ଼ିଲା ବେଳକୁ ପେଟରେ ଭୋକ ଦରଣ୍ଡି ହେବାରୁ ସମସ୍ତଙ୍କ ଚେତା ପଶିଲା । ଚାଲ ଏଥର ଗାଧୁଆ ପାଧୁଆ କରିବା । ଅଜା ସମସ୍ତଙ୍କୁ ଅଟେଇ ଅଟେଇ ନେଲେ । ସେତେବେଳକୁ ଅଜାଙ୍କର ଅବସ୍ଥା

ନଥାଏ । ଦେହଯାକ ରଙ୍ଗ ବେରଙ୍ଗ । ମୁହଁଟା କଳା କଳୁକଟ ବାଳଯାକ ରୁପେଲି ରଙ୍ଗରେ ଧଳା ସର ସର । ଜାମା ଖଣ୍ଡ ଚିରି ଫାଳ ଫାଳ ଧୋତି ଖଣ୍ଡିକ ଚିରି କେନା କେନା ହୋଇ ଝୁଲୁଥାଏ । ଅଜାଙ୍କୁ ଯିଏ ଏକୁଟିଆ ଦେଖିବ ଭେଟେଣା ହୋଇଯିବ ।

ସମସ୍ତେ ଲଗାଇଲେ ଅଜା ଆଈଙ୍କ ପାଖକୁ ଚାଲ, ଦେଖିବା ତୁମକୁ ସିଏ ଚିହ୍ନି ପାରୁଛନ୍ତି କି ନାହିଁ ! ଅଜା ଟିକିଏ ରଜା ହସ ହସି କହିଲେ ଆଈ, ନା ତା ବୋପା ମଧ୍ୟ ଚିହ୍ନି ପାରିବ, ମୋର ଏ ବେଶ ଦେଖି ଦେଖି ପରା ହାଣ୍ଡିଏ ଚିତ୍କାର ମଚାଇବ, ଚାଲ ନ ଦେଖିବ ।

ସମସ୍ତେ ମଜା ଦେଖିବା ପାଇଁ ଅଜାଙ୍କ ଦାଣ୍ଡ ଦୁଆରେ ଯାଇ ଠିଆ ହେଲେ । ଅଜାଙ୍କୁ ଚୁପଚାପ ଇଶାରା ଦେଲେ ଚାଳ ଉପରେ ଚଢ଼ି ଦୁଆରକୁ ଯାଇ କବାଟ ଖୋଲି ଆମେ ଆଈଙ୍କୁ ରଙ୍ଗ ମାରିବୁ । ଅଜା ଚିରା ଲୁଗା ଖଣ୍ଡ କେଙ୍ଗଟି ମାରି ଦେଇ ମାଙ୍କଡ଼ ଭଳିଆ ଚାଳ ଉପରକୁ ଚଢ଼ି ଗଲେ । ଭୁଷକରି ଦୁଆରକୁ ଡେଇଁଲେ ।

ଏଣିକି ବେଳକୁ ନଆଁ ଲଗା ବଜାର ଛୁଆଗୁଡ଼ା ମଜା ଦେଖିବାକୁ ଚୋର ଚୋର ବୋଲି ଭୁଲର କଲେ । ଆଈ ସେତେବେଳକୁ ଘିଅ ଗାଳି ପେଜ ଟିକେ ଦୁଆରକୁ ଫୋପାଡ଼ିବାକୁ ଆସୁଥିଲେ । ଚୋର ଚୋର ଡାକ-ଶୁଣି ଚମକି କରି ଚାହିଁ ଦେଲେ ଯେ ଦୁଆରେ କିଏ ଗୋଟାଏ ବିକଟାଳିଆ ହୋଇ ଠିଆ ହୋଇଛି । ଚୋର ବୋଲି ଭାବି ତତଲା ପେଜ କଟେରିକ ତା ଉପରକୁ ଛାଟି ଦେଲେ । ଅଜା-ଇଲେ ବୋପାଲେ...... ଇଲୋ ମା ଲୋ ହୋଇ ପାଟି କରୁ ଥାନ୍ତି ରଡ଼-କରି କହୁଥାନ୍ତି ମାଇକିନା ମୋତେ ମାରି ଦେଲା ଲୋ ! ମୁଁ ଚୋର ନୁହେଁ ଲୋ—ଆଲୋ ମୁଁ ଲୋ, ଅଜାଙ୍କ ସ୍ୱର ସେତେବେଳକୁ ଘଡ଼ଘଡ଼ିଆ ଧରିଲାଣି । ବୁଢ଼ୀତ ସହଜେ ଥେଙ୍ଗ କାଲୁଣି । ସେ ତାଙ୍କ କଥାକୁ କାନ ନଦେଇ ରଡ଼ିଗୁଡ଼ି କହୁଥାଏ ଯୋଗେଣୀ ଖିଆ ଚୋର ମୋ ଘରେ ପଶିଲୁ । ଦଉଛି ତତେ ପାନେ, କହି ଘୁଞ୍ଚୁଣିଟା ଦୁଆରୁ ଗୋଟେଇ ଦୂମ୍ ଦୂମ୍ କୋରି ଚାଲିଲେ ।

ଏଆଡ଼େ ପିଲେ ଭିତରେ ଦୁମ୍ ଦୁମ୍ ଶବ୍ଦ ସାଙ୍ଗକୁ ଅଜାଙ୍କ ବିକଳ ରଡ଼ ଶୁଣି କବାଟ ଦୁଲୁ ଦୁଲୁ ବାଡ଼େଇ ଆଈଙ୍କୁ ଡାକ ଛାଡ଼ିଲେ । ଆଈ

ସେଆଡେ କାନ ନଦେଇ ମନ ଇଚ୍ଛା ପିଟି ଗ୍ଲିଲେ । ଅଜା ଯେତେବେଳେ ବେହୋସ ହୋଇ ତଳେ ଖସି ପଡିଲେ ତାଙ୍କୁ ଭୁତ ଗଡ଼ ଜଗୁକଲା ପରି ଗଦାରେ ଆଣ୍ଠୁ କବାଟ ଖୋଲିଲେ । ସମସ୍ତେ ଧୋ ଧା ହୋଇ ଦୁଆରକୁ ଚଳିଆସି ଅଜାଙ୍କୁ ଘେରିଗଲେ । ଅଜା ସେତେବେଳକୁ ନାଟରେ ମୃତ ସୈନିକ ପରି ଷ୍ଟେଜରେ ମେଲାଇ ଚିତ୍ପଟାଙ୍ଗ ।

ଆଈ ତାଙ୍କ ଆଙ୍ଗୁଠି ଦେଖାଇ ପିଲମାନଙ୍କୁ ଅଜାଙ୍କ ଆଡ଼କୁ ଇଶାରା ଦେଇ କହିଲେ ହେଇଟି ଦେଖ ! ଏତେ ବଡ଼ ଗାଁ ସାରା ଚୋରେ ଚୋର ବୋଲି ବେବାକ ଗୁଜୁଥିଲି କେହି ଧରି ପାରୁ ନଥିଲି ଏବେ ପାହାରକେ ତଳେ ମାଟି କାମୁଡ଼ି ପଡ଼ିଛି. ଯାଅ ଝଟ ଥାନା ବାବୁଙ୍କୁ ଡାକିଆଣ । ଯୋଗଣିଖିଆକୁ ବାନ୍ଧି ନେଇ ଘଣା ଟେକନ୍ତୁ । ଆରେ ବାଘ ଘରେ ମିରିଗ ନାଟ ।

ପିଲମାନେ ତା କଥାକୁ କାନ ନଦେଇ ଧାଇଁ ଯାଇ ଅଜାଙ୍କୁ ତଳୁ ଟେକି ଧରି ପାଣି ଢାଳେ ଆଣି ମୁହଁରେ ଛିଟିଲେ । ମୁଣ୍ଡରୁ ବୋହି ଆସୁଥିବା ରକତ ଗୁଡାକ ଗାମୁଛାରେ ପୋଛି ପକାଇଲେ । ଅଜାଙ୍କ ଚେତା ଆସିବାରୁ ଲୁହେଇ ହେଲେ । ମୁହଁଟା ପୋଛି ଦେଲାରୁ କଳା ଗୁଡ଼ାକ ସେ ଛି ହୋଇଗଲା । ତଟଲା ତେଜ ପଡି ମୁହଁଟା ନାଲି କଟ କଟ କଇଁଥା ବାଇଗଣ ପରି ସିଝି ଯାଇଛି । ପିଲାମାନେ ଆଈ ଆଡ଼କୁ ଖତେଇ ହୋଇ କହିଲେ "ସବାଖାଇ ବୁଢି, ଚୋର ଧରିଛୁ କଣ ଇଏ ପର ହେଇ ଅଜା" ? ବୁଢୀ ଅଜାଙ୍କୁ ଏଥର ଚିହ୍ନି ପାରି ଧାଇଁ ଯାଇ ତାଙ୍କ ଗୋଡ଼ ଯୋଡ଼ାକ ଧରି ପକାଇ ବାହୁନା ଆରମ୍ଭ କରିଦେଲା— ମୁଁ କ'ଣ କଲିଲୋ ମା—ନଆଁ ରତ୍ତ ହୋଇ ଖେଳ ମୋତେ ସାରି ଦେଲେ ଲୋ ମା— ।

●

('କୁନି ଗଇଜ' ଶିଶୁ ପତ୍ରିକାରେ ମେ ମାସ ୧୯୭୨ ମସିହାରେ ପ୍ରକାଶିତ)

# ଛକଡ଼ି ଅଜାଙ୍କ ଛାଡ଼ଖାଇ

କାର୍ତ୍ତିକ ପୂର୍ଣ୍ଣିମୀର ଜୋଛନା ଧୂଆ ରାତି । ସୁରଆଡ଼େ ଆନନ୍ଦ କୋଳାହଳ ଥମି ଥମି ଆସିଲଣି । ଦୂରରୁ ମନ୍ଦିର ମାନଙ୍କରେ 'ରାସ-ସଙ୍ଗୀତ' ଅସ୍ପଷ୍ଟ ହୋଇ ଆସିଲଣି । ସେ ସୁଆଡେ ଲୋକମାନେ ନିଦ୍ରା ରେ ଅଚେତନ । କିନ୍ତୁ ଛକଡ଼ି ଅଜାଙ୍କୁ ନିଦ କୁଆଡ଼େ ଗୁଡ଼ ପକେଇଛି । କେତେବେଳେ ରାତି ପାହିବ । ଛାଡ଼ ଖାଇର ସେ ଶୁଭ ମୁହୂର୍ତ୍ତ ଆସିବ । ଆଜିକୁ ପାଞ୍ଚ ଦିନ ହେବ ତାଙ୍କ ପାଟିରେ ଆମିଷ ପାଣି ଟୋପାଏ ବାଜିନି ଆହାର ପ୍ରାୟ ଗୁଡ଼ ହେଲେଣି । ଏଇ ତାଙ୍କ ସ୍ତ୍ରୀ ଚେମି ଆଣ୍ଠୁ ଉପରେ ପଂଚୁକ ପାଳିଛନ୍ତି । ବଗ କୁଆଡେ ଏଇ ପାଂଚ ଦିନ ଆମିଷ ଛାଡ଼େ । ସେତ ପୁଣି ମଣିଷ ଲୋକ ଲଜ୍ୟାତ ଗୋଟାଏ ଅଛି । ନହେଲେ ସେ କିଏ ଏ ପଞ୍ଚୁକ କିଏ ? ସବାଖାଇ ବୁଢ଼ିଟା ଗୋଡେ ରୋଗେ ଜଗିଛି । କାଲେ କେତେବେଳେ ବାଉଳା ହୋଇଯିବେ । ହେଲେ ନିଆଁଲଗା ରାତିଟା କିଣ ବେଗେ ପାହୁଛି । ଥରେ ଥରେ ହୋଇ କୋଉଏ ଥରେ କବାଟ ଖୋଲି ଭିଁକି ମାରୁଛନ୍ତି, ସେଇ ଜହ୍ନ··· ···ସେଇ ଘାନ·····ସୂର୍ଯ୍ୟର ଆଗମନ ନାଁ ର ଗନ୍ଧ ନାହିଁ । ଏମିତି ଉଦ୍ବେଳ ବିକଳରେ କେତେବେଳେ ଅଜାଙ୍କ ଟିକିଏ ଛୁଇ ନିଦ ଲାଗିଯାଇଛି, ହଠାତ୍ 'କୁଆ'ର କା' କା' ଡାକରେ ସୁଙ୍ଗାଁ ନିଦଟା ଚଟ୍ କରି ଭାଙ୍ଗିଗଲା । ଅଜା ଧଡ଼ ପଡ଼ ହୋଇ ଉଠିପଡ଼ି ଶୀଘ୍ର ଶୀଘ୍ର ନିତ୍ୟକର୍ମ ସାରି ବାହାରି ପଡ଼ିଲେ 'ମାଛ' କିଣିବା ପାଇଁ । ହେଲେ ଏ ରଙ୍କୁଣୀ ବୁଢ଼ୀଟା କିଣ ପଇସା ମୁ ଛୁଇଁଛି ? ଜମା 'ଯୋଡ଼ିଏ ଟଙ୍କା ଦେଲା । କେତେ ମାଛ ହେବ ସେଥିରେ । ଆଜିକାଲି ମାଛର ଯେଉଁ ଦର ମୋଟେ 'ଦୁଇଶ' ମାଛ ହେବ, ଦି ଜଣ ମଣିଷ କ'ଣ ଖାଇବେ ସେଥିରୁ । ତାଙ୍କଠୁ ବ୍ରାହ୍ମଣୀର ସେ କିଣି ବଳି ପଡ଼ିବ । ଧାରି ଆଣିଥିବେ ପରେ ପରେ ଆସ୍ତେ ଆସ୍ତେ ବଜାର ସଉଦାର 'ରେସା କାଟି ଶୁଝିଦେବେ ।

ଅଜାଯାଇ ମାଛ ହାଟରେ ପହଞ୍ଚିଲାବେଳକୁ ଲୋକ ହାଉଜାଉ ଏ ତାହାଣୀ ଲୋକ ଗୁଡ଼ାଙ୍କୁ କଣ ରାତିରେ ନିଦ ହୋଇ ନଥିଲା । ମନେ ମନେ ଗୁରୁଗୁରୁ ହେଲେ ଅଜା । ମାଛବାଲାମାନେ ଆଜି ଯେମିତି ରଜା-କଥା କଥା ଶୁଣୁନାହାନ୍ତି । ଅଜା ବହୁତ ମୂଲଚାଲ କରି କରି କ୍ଳାନ୍ତ ହେଲେଣି । ଯେଉଁ ସୁନ୍ଦର ରୁପା ରଙ୍ଗିଆ ଚକଚକିଆ ରୋହି, ଭାକୁଡ଼ ଗୁଡ଼ାକ ଖାଲି ଦେଖିଲା ବେଳକୁ ଅଜାଙ୍କ ପାଟିରୁ ନାଳ ଗଡ଼ିଲା ଗୁଡ଼ାକ ମଣ ଯାଉଛି । ଅଜାଣତରେ ଅଜା ସେ ବୁଢ଼ା ପାନ ଗୁଅ ସହିତ ଢୋକି ନେଉଛନ୍ତି । ହେଲେ କିଣିବାକୁ ସେଥିରୁ ଗୋଟିଏ ପାଖରେ ପଇସା କାହିଁ ? ଡିହ୍ଲା ମାଛବାଲାଟା ପାଖରେ ଯେତେ ବାଆଁରେଇ ଚାଆଁରେଇ ହେଲେ ଯେତେ ଦାନ୍ତ ଦେଖେଇ ଧାର ପାଇଁ ନେହୁରି ହେଲେ ସେ 'ଅଲପାଇସିଆ'ଟା ମୁହଁକୁ ଚାହିଁଲାନି । ତେବେ କଣ ଅଜା ଏତେ ବଡ଼ ଗୁଣ୍ଡଖାଇରେ ଚୁନା ମାଛ ଦି'ଟାରେ ସନ୍ତୁଷ୍ଟ ହେବେ ? ନା...ସେ ନିଷ୍ଟୟ ଦେଖିଲା କାମ କରିବେ । ଯେଉଁଠି ଲୋକ ଗହଳି ଅଜା ସେଇଠି ପଶିଗଲେ । ମଉକା ଦେଖି ଗୋଟିଏ ସେରକିଆ ରୋହି ମାଛ ଧରି ମାର । ସଙ୍ଗେ ସଙ୍ଗେ ହୋ ହଲ୍ଲା...ନେଇଗଲା ଧର...ଧର । ଅଜା ଅତରଛାରେ ଦୌଡ଼ିଲେ । ବେଶି ବାଟ ଯାଇ ପାରିଲେନି । ଚାରିପଟରୁ ଲୋକ ଘେରିଯାଇ ବିଧା ଗୋଇଠା କେତେ ଯେ ବର୍ଷା ହେଲା ଅଜାଙ୍କର ହୋସ ନାହିଁ । କାହାର ଗୋଟାଏ ବିଧାରେ ଅଜାଙ୍କର ହଲୁଥିବା ଚାମୁ ଦାନ୍ତ ଦୁଇଟା ଖସି ପଡ଼ିଲା । ସାର୍ଟ ଖଣ୍ଡିକ ଚିରି ଫାଳ ଫାଳ । ତଳେ ପଡ଼ିଯାଇ କାଦୁଅ ମାଟିରେ ଲୁଗା ଖଣ୍ଡିକ ଜୁଡ଼ୁବୁଡ଼ୁ ! ନିଆଁଲଗା ପୋଲିସ କେଉଁଠି ଥିଲା କେଜାଣି ଗୋଳମାଳ ଶୁଣି ଚେଉକା ବଲେଇ ପରି ଶୁଙ୍ଘି ଶୁଙ୍ଘି ଆସି ହାଜର । ଲୋକମାନେ ତାଙ୍କୁ ଟାଣି ଟାଣି ନେଇ ପୋଲିସ ଜିମା କରିଦେଲେ । ସାରାଦିନ ଭୋକ ଉପାସରେ ଥାନା ଭିତରେ ହାଜତ ଘରେ କଟିଲା । ଅଲାଜୁକ ପୋଲିସ ଗୁଡ଼ାକ ଯୋଉ ଚିମୁଟେଇ ବିଧୁଲେଇ ତାଙ୍କୁ କହୁଥାନ୍ତି ହୃଦରେ ନିଆଁ ଲାଗି ଯାଉଥାଏ । ସନ୍ଧ୍ୟା ବେଳକୁ ଖବର ପାଇ ତାଙ୍କ ପୁତୁରା ଆସି ମୁକୁଳେଇ ନେଲା । ଆଉ କି ଗୁଣ୍ଡଖାଇ ? ମାଡ଼ ଗାଳି ଦୁଃଖ ଅପମାନରେ ମୁଣ୍ଡ ଛିଣ୍ଡି ପଡ଼ୁଥାଏ । ସକାଳୁ ଉଠି କା' ମୁହଁ ଚାହିଁ-ଥିଲେ କେଜାଣି...ନା-ଆଉ ଜୀବନରେ ଦିନେ ହେଲେ ଆଇଁଷ ଖାଇବେ ନାହିଁ କି ମାଛ କିଣିବା ନାଁ ଧରିବେନି ।

---

# ରାଣୀ ଭୂମିକାରେ ମଣି ଅଜା

ଗଣିପୁର ଗାଁରେ ଏଥର ଦଶହରା ପୂର୍ବରୁ ଗାଁର 'ବେକାର ଦାଣ୍ଡଦା'ରେ ବିକ୍ରୁବା ଟୋକା ଦଳଙ୍କର ଝୁଙ୍କ ଉଠିଲା ଏଥର ଆମେ ହରିଶ କୁଆଁରି ପୁନେଇକୁ ଡ୍ରାମା କରିବୁ । ଅନ୍ୟଥା ଏ ବୁଢା ମାଙ୍କଡ଼ ମାଲଚେଙ୍ଗିଆ କମ୍ପାନି ବରହମ୍ପୁରିଆ ଦାସକାଠିଆ ବାଲାଙ୍କୁ ପଇସା ଗଣା ହେବନି । ସମସ୍ତଙ୍କ ମନକୁ କଥାଟା ପାଇଗଲା । ଗାଁ କ୍ଲବ୍ ଘରେ ମିଟିଂ ହେଲା । ନେମଠାରେ ଠିକ୍ ହେଲା "କାର୍ତ୍ତବୀର୍ଯ୍ୟ ସଂହାର" ଅପେରା କରାହେବ । କିଏ କେଉଁ ପାର୍ଟ କରିପାରିବ ଦେଖି ଗୁହାଁ ଦିଆ ହେଲା । ମଣି ଅଜାଙ୍କ ବାଗୁଲି ବାଳ ସାଙ୍ଗକୁ ମାଲଚିଆ ସ୍ୱର ସ୍ତ୍ରୀ ପାର୍ଟ ପାଇଁ ଉପଯୁକ୍ତ । ତାଙ୍କୁ 'ଦୂତ'ର ସ୍ତ୍ରୀ ପାର୍ଟ ଦିଆ ହେଲା ।

ରିହରସାଲ ବେଳେ ଦୁଇ ହାତରେ ଦୁଇଟା ଖାଣ୍ଡା ଧରି ସେ ଯେତେବେଳେ ଦୂତ ପାର୍ଟ କରୁଥିବା କେଳୁ ଦାସ ଉପରକୁ ଗର୍ଜନ କରି ଚୋଟେଇ ଆସନ୍ତି, ଦେଖଣା-ହାରୀଏ ହସି ହସି ଏକବାରେ ବେଦମ୍ । ଡ୍ରାମା ୧୦।୧୧ ଦିନ ଅଛି ହଠାତ୍ ମଣି ଅଜାଙ୍କ ବୁଢ଼ୀ କଟକରେ ଠକ୍ କରି ମରିଗଲା । କଣ କରିବେ ବିଚରା ମଣି ଅଜାଙ୍କୁ ଲଣ୍ଡା ହେବାକୁ ପଡ଼ିଲା ସମସ୍ତେ ଅଜାଙ୍କୁ ବୋଧ ଦେଲେ କିଛି ବ୍ୟସ୍ତ ହେବାର ନାହିଁ କଟକରୁ ଏମିତି ଚେଶାର ଆଣିବେ ଯେ ଲଣ୍ଡା ମୁଣ୍ଡରେ ନକଲି ବାଳ ଦେଇ ଖୋସା ବାନ୍ଧି ଦେବେ ଯେ, କାହାର କ୍ଷମତା ନଥିବ ଜାଣିବା ପାଇଁ । ରାଣୀ ଭୂମିକାରେ ପାଠ କରୁଥିବା ନନ୍ଦିଆ କ୍ଲବ ସେକ୍ରେଟାରୀ । ସେଥିପାଇଁ ସେ ଯେତେବେଳେ ଅନ୍ୟ କାମରେ ଯାଏ ଅଜା ତା ପାର୍ଟଟା କରି ଦିଅନ୍ତି ।

ଗୁହାଁ ଗୁହାଁ ଡ୍ରାମା ଦିନ ଆସି ପହଞ୍ଚିଗଲା । ଦିନକ ପୂର୍ବରୁ ରାତି ଅନିଦ୍ରା ହୋଇ ସିନ୍ [illegible] ବନ୍ଧା ହୋଇଥିଲା । ଡ୍ରାମା ଦିନ ଗୋଟାଏ

ବେଲକୁ ମାଇକ୍ ଲାଇଟ୍ ବାଲା ଓ ପେଣ୍ଟର ସବୁ ଆସି ପହଞ୍ଚ ଗଲେ । ଧନ ଗୃହଟାରୁ ବେଶ ହେବା ଆରମ୍ଭ ହେଲା । ସନ୍ଧ୍ୟା 'ଛ' ନ ବାଜୁଣୁ ଆଖ ପାଖ ଦଶଖଣ୍ଡି ଗାଁର ଲୋକ ଆସି ଜମା ହୋଇ ଗଲେଣି । ଲକ୍ଷ୍ମୀ ମେଢ଼ ଦେଖିବେ, ଡ୍ରାମା ଦେଖିବେ । ରାଣୀ ପାର୍ଟ କରୁଥିବା ନଟିଆ ଲାଇଟି ଠିକ କରୁ କରୁ ହଠାତ୍ ତାରଟାଏ ଛୁଟି ଯାଇ ସକ୍ ମାରିଲା ଯେ ବିଚରା ଖଣ୍ଡେ ଦୂରକୁ ଛିଟିକି ପଡ଼ିଲା । ଧାଲଢୋଲି ଦଉଡ଼ିଗଲା, ସଙ୍ଗେ ସଙ୍ଗେ ପାଖରେ ଥିବା ଗ୍ରେଣ୍ଟ ଡାକ୍ତର ଖାନାକୁ ନେବା ହେନେଲେ । ଡାକ୍ତର ଚିକିତ୍ସା କରି ଦେଖିଲେ କେଶି କଷ୍ଟ ହୋଇନି । କିନ୍ତୁ ମୁଣ୍ଡଟା ତାର ଝିମ ଝିମ୍ ହେଉଛି ଦେହ ଥରୁଛି । ଡାକ୍ତର ତାଙ୍କୁ ଔଷଧ ଦେଇ ଶୁଆଇ ରଖିଲେ । ସମସ୍ତଙ୍କ ମନ ଖଟା ହୋଇଗଲା । କଣ କରିବା ଏଇ ଶେଷ ମୁହୂର୍ତ୍ତରେ ? ଲୋକ ଏତେ ଜମା ହୋଇ ଗଲେଣି ଯେ ଥାଳି ମାରିଲେ ଗଳିପିବ । ଶେଷକୁ ମଣି ଅଜା ବାହାରି ପଡ଼ି କହିଲେ "କୁଛ୍ ପରବାୟ ନେହିଁ" ମୁଁ ରାଣୀ ପାର୍ଟ କରିବି ! ମୁଁ ତ ଅନେକ ଥର ନଟିଆର ପାର୍ଟଟା କରିଛି ତା ଛଡ଼ା ମୋ ପାର୍ଟଟା ମଧ୍ୟ ଶେଷରେ । ସମସ୍ତଙ୍କ ମନକୁ କଥାଟା ପାଇଲା । ଅକୂଳରେ କୂଳ ମିଳିଲା ଡ୍ରାମା ବନ୍ଦ ହେଲେ ଲୋକେ ତାଙ୍କୁ ବାଟ ଚଲେଇ ଦେବେନ ।

ମଣି ଅଜା ତର ତର ହୋଇ ଯାଇ ରାଣୀ ବେଶ ହେଲେ । ସେ ପେଣ୍ଟରଟା ତାଙ୍କ ଲଣ୍ଡା ମୁଣ୍ଡରେ ନକଲି ବାଳ ଦେଇ ବଢ଼ିଆ ଖୋଷା କରିଦେଲା । ଭଲକରି ନାଲିଆ ଜରି ପାଟଟା ପିନ୍ଧାଇ ଦେଲା । ନକଲି ଗହଣା ଦେହ ମୁଣ୍ଡରେ ଖଞ୍ଜିଦେଲା । ମୁଣ୍ଡରେ ଜରି ମୁକୁଟ ବାନ୍ଧି ଦେଲା । ଅଜାଙ୍କୁ ଜମା ଚିହ୍ନି ହେଲାନି । ଅଜା ଦରପଣ ଟାଏ ଧରି ଟେକେଇ ଚାହିଁ ଦେଲା ବେଳକୁ ତାଟକା ହୋଇଗଲେ । ଶାଳୀ ଲକ୍ଷ୍ମୀ ବୋଉ ଦେଖିଲେ ତାଙ୍କୁ ଜମା ଚିହ୍ନି ପାରିବନି । ମାଇକିନା ଦେଖ, ନିଜେ ସୁନ୍ଦରୀ ବୋଲି ଭାରି ଫୁଲେଇ । ଆରେ ବାବା ଯିଏ ପୁଲାଏ ଗହଣା ପିନ୍ଧିଲା ସେ ସୁନ୍ଦର ଦିଶିବ । ତୋର କଅଁ ଏଡ଼େ ଗର୍ବ ।

ଯଥା ସମୟରେ ଡ୍ରାମା ଆରମ୍ଭ ହେଲା । ଷ୍ଟେଜ୍ ପାଖକୁ ଗାଁ ମାଇପେ ପୁଟିଆ, ହେଂସ ପକାଇ ବସିଥାଆନ୍ତି । ହୁଇସିଲ ବାଜିଲା, ସିନ୍ ଉଠିଲା । ରାଜା କାର୍ତ୍ତବୀର୍ଯ୍ୟ ସିଂହାସନରେ ବସିଛନ୍ତି । ତାଙ୍କ ପାଖରେ

ରାଣୀ ଠିଆ ହୋଇଛନ୍ତି । ରାଜା ଡ଼ାକିଲେ ମହାରାଣୀ··· । ମଣି ଅଜା ସେତେବେଳକୁ ଆଗ ଧାଡ଼ିରେ ବସିଥିବା ତାଙ୍କ ସ୍ତ୍ରୀ ଗେହ୍ଲୀ ବୋଉକୁ ଚାହିଁ ମୁରୁକି ମୁରୁକି ହସୁଛନ୍ତି । ଗାଁ ମାଇକିନିଏ ତାଙ୍କୁ ଦେଖି ଆବା-କାବା । ଗେହ୍ଲୀ ବୋଉ ହାଁ କରି ତାଙ୍କ ଆଡ଼କୁ ଅନେଇ ରହିଛି । ରାଜା ପୁଣି ଗର୍ଜି ଉଠିଲେ ମହାରାଣୀ ·· । ସିନ୍ ପଛରୁ ଫୁସ୍ ଫୁସ୍ ଶୁଭିଲା ଅଜା ପାର୍ଟ କୁହ । ଅଜା ପାର୍ଟ କଥା ଭୁଲି ଗଲେଣି । ଯେମିତି ପଛରୁ ରଗଡ଼ ଶୁଭିଲା । ଅଜାଙ୍କର 'ଦୂତ ସ୍ତ୍ରୀ' ପାର୍ଟଟା ମନେ ପଡ଼ିଗଲା, ସଙ୍ଗେ ସଙ୍ଗେ ରଡ଼ିଟାଏ କରି ଅଣ୍ଟାରେ ଲୁଗାଟାକୁ ଗୁଡ଼େଇ ଦେଇ ଚିତ୍କାର କଲେ ବାଡ଼ିଖିଆ ଯୋଗିନୀଖିଆ ମଦପଟେଇ ପିଇ ରାତି ଅଧରେ ଡାକ ଛାଡ଼ୁଛୁ ? କୁଆଡେ଼ ଗଲା ମୋ ଝାଡ଼ୁ··· ରହ ତୋ ପିଠିରେ ଗଲୁ ଛଟେଇ ଦେଉଛି ··ସମସ୍ତେ ଆବାକାବା··· । ସିନ୍ ଭିତରୁ ଗୋଳମାଳ ଶୁଭିଲା—ଖଲା ସାଇଲା — ମଡ଼ର କଲା — ଅଜା ଭାବିଲେ ସେ ବୋଧହୁଏ ହାତରେ ଝାଡ଼ୁଟା ଧରି ନାହାନ୍ତି ବୋଲି ସମସ୍ତେ ପାଟି କରୁଛନ୍ତି । ଷ୍ଟେଜ୍ ଝାଡ଼ିବା ପାଇଁ ଥୁଆ ହୋଇଥିବା ଝାଡ଼ୁଟା କୋଣରୁ ନେଇ ଆସି ରଜାକୁ ପିଟିବାକୁ ଧାଇଁଲେ । ରାଜା ଧାଇଁଥାନ୍ତି ଷ୍ଟେଜ୍‌ରେ ବନ୍ଧା ହୋଇଥିବା ମାଇକଟା ମୁକୁଟରେ ବାଜିଯାଇ ମୁକୁଟ ସହ ଖୋଷା ତଳେ ପଡ଼ିଗଲା । ଅଜା ଲଣ୍ଡା ମୁଣ୍ଡକୁ ଆଉଁସିବାରେ ଲାଗିଥାନ୍ତି । ଲୋକମାନେ ହୋଃ ହୋଃ ହସି ହସି ଜୋରରେ ତାଳି ମାରୁଥାନ୍ତି । ହଠାତ୍ ହୁଇସିଲ ବାଜି ସିନ୍ ପଡ଼ିଗଲା । ଅଜାଙ୍କୁ ଘେରି ଯାଇ ଡ୍ରାମା ପିଲାଏ ବନ୍ଧେ କୋଳେଇ ନେଲେ । ସେଇ ଦିନଠୁ ଗାଁର ବଗୁଲିଆ ଟୋକା ଅଜାଙ୍କୁ ମହାନ୍ତି ଗୀତ ସ୍ୱରରେ ଗାଇଲେ—

ଏ-ଏ-ଏ-ଏ ଅଜା ମଣି
ଲଣ୍ଡା ମୁଣ୍ଡଟାରେ ସାଜିଥିଲ ତୁମେ
ଦୂତ ଘରଣୀ
କାହିଁ ଗଲା ସେହି ମୁଣ୍ଡି ଗୁଞ୍ଜୁଣୀ
ଏ-ଏ-ଏ-ଏ ଅଜା ମଣି



(କୁନରାଇଜ ପତ୍ରିକାର ୧୯୬୮ ମସିହା ଡିସେମ୍ବର ମାସରେ ପ୍ରକାଶିତ)

# ଗଣି ଅଜାଙ୍କ ବଣ ଭୋଜି



ବେଣୀ ପୁର ଗଣିଅଜାଙ୍କୁ ଭୋଜି ନା କହିଲେ ଦଶ ମାଇଲ ବାଟ ହେଉ ପଛକେ ଲଙ୍ଗଳା ମୁକୁଳା ହୋଇ ଧାଇଁବେ । ଖାଇବାରେ ଯେମିତି ଅସୁରଙ୍କ ଶଶୁର, ରାନ୍ଧିବାରେ ସେମିତି ଓସ୍ତାଦ । ଗାଁରେ ଯାହାର ଯାହା ଭୋଜି ଭାତ ହେଲା ଆଗ ଡାକ ପଡୁଥିଲା ଗଣିଅଜାଙ୍କୁ । ସେଥି ପାଇଁ ଗଣି ଅଜାଙ୍କର ଭାରି ଗର୍ବ ।

ଏଥର ଦଶହରା ଛୁଟିରେ ଗାଁ ପିଲାମାନେ ଠିକ୍ କଲେ ଗୋଟେ ବଡ଼ିଆ ବଣ ଭୋଜି କରିବା ଟିକର ପଡ଼ା ମହାନଦୀ କୂଳରେ । ସଙ୍ଗେ ସଙ୍ଗେ ଚାନ୍ଦା ଆଦାୟ ହୋଇ ଜିନିଷ ପତ୍ର କିଣା କିଣି ହୋଇଗଲା ଦୁଇ-ଜଣ ଟୋକା ଧାଇଁଲେ ଗଣିଅଜାଙ୍କ ପାଖକୁ । ଗଣିଅଜା ଦେଖିଲେ ଏଇ ମଉକା, କାହିଁକିନା ଆଜିକାଲି ଯିଏ ଯେଉଁ କାମ କରୁଛି ଆଉ ଫିସ୍ ନେଉଛି । ସେ କାହିଁକି ମାଗଣାରେ ଖଟିବେ ସେ କଣ ବେଠିଆ ସେ, ଉଃ ଆଃ ହୋଇ କଥାଟାକୁ ଫିଟାଇ ନକହି ଟିକିଏ ଜାକିଆଡ଼ି ହୋଇ କହିଲେ "କଣ କରିବ ନାତିଏ, ଦି'ଦିନ ହେଲା ଅଣ୍ଟାଟା ଧରୁଛି ଉଠି ବସି ପାରୁନି " ଭଡ଼ଭଡ଼ିଆ ବୁଦ୍ଧୁ କହିଲା ଅଜା ତମେ ପରା ଆଜି ସକାଳେ ବଲଆଡ଼େ ବୁଲୁଥିଲ କାଇଁ ସେତେବେଳେ ତ ଅଣ୍ଟା ଧରି ନଥିଲା । ଅଜା ଚଟ କରି କଥାଟାକୁ ବୁଲେଇ ଦେଇ କହିଲେ ନାଇଁରେ ନାତି ଡାକ୍ତର ପାଖରୁ ଫେରୁଥିଲି । ଡାକ୍ତର ନଅଁଲଗା କହିଲା ଟଙ୍କା କୋଡ଼ିଏ ଯାଏ ଖର୍ଚ୍ଚ କଲେ ଏଇନେ ସାଙ୍ଗେ ସାଙ୍ଗେ ଭଲ ହୋଇ ଯିବ । ମୋ ପାଖରେ ତ ଟିକି ପଇସାଟିଏ ନାହିଁ ଆଉ ଔଷୁଧ ଖାଇବି କେମିତି ? ପିଲେ ଦେଖିଲେ ଏ ଖଣ୍ଡିଆ ବୁଢାଟା ଟଙ୍କା ନ ନେଲେ

ପିବନି । ବାନ୍ଧି ହୋଇ ଟଙ୍କା କୋଡ଼ିଏଟି ଦେଇ ମନେ ମନେ ରକ୍ତ ଗୁଣ୍ଡିଲ ଗୁଣ୍ଡେଇ ଗୁଣ୍ଡେଇ କହିଲେ ରହ ବୁଢ଼ା ତତେ ଗାରଦ ଦେବୁ ।

ତା ଆରଦିନ ସବୁ ଜିନିଷ ପତ୍ର ବନ୍ଧାବନ୍ଧି କରି ଦିନ ଦଶଟା ବେଳକୁ ଠିକଣା ପଡ଼ା ବସନ୍ତ ବାଡ଼ାରି ପଡ଼ିଲେ ପିଲାମାନେ । ଘଣ୍ଟେ ନ ପାହୁଣୁ ବୁଢ଼ାଅଜା ଆସି ପିଲାଙ୍କ ପାଖରେ ହାଜର । ଅଜା ପହଞ୍ଚିଲେ ସବୁ ରୋଗ ତାର ଭଲ ହୋଇ ଯାଇଥିଲା । ସକାଳୁ ଘରେ ଲୋକଙ୍କୁ ବନ୍ଦୋବସ୍ତ ଦେଇ ଆସିଛି, ନଳେ ମଧ୍ୟ ଖାଲି ନାଲି ଗୁଆଗୁଣ୍ଡି ଟିକଏ ପିଇ ଆସିଛି । ଭଲ କରି ଭୋକ ହେଲେ ଆଗୁ କେଉଁ ଗ୍ରାମରୁ ଟିଏ ଠୁକିବ । ଆଉ ଯାହା ବଳିବ କାନରେ ବାନ୍ଧି ଆଣିବ ପରେ ବୁଢ଼ୀ ଖାଇବ ।

ସମସ୍ତେ ଯାଇ ଦିନ ଦଶଟା ବେଳକୁ ଠିକଣା ପଡ଼ାରେ ପହଞ୍ଚିଲେ ଦିନ ବାରଟା ବେଳକୁ ରନ୍ଧାରନ୍ଧି ଶେଷ ହେଲା । ଅଜା ଯେତେ ଚେଷ୍ଟା କଲେ ମାଉଁସ ଟିକଏ ପାଟିରେ ପକେଇ ପାରିଲେନି । ଏ ମାଙ୍କଡ଼ ଖଣ୍ଡିଆ ପିଲା ଗୁଡ଼ାକ ତାଙ୍କ ଗୋଡ଼େ ଗୋଡ଼େ ଜଗିଛନ୍ତି । ହଉ ଖାଇଲା ବେଳେ ତିନ ଡ଼ବଲ ଠୁକି ଦେବ । ଅଜାଙ୍କ କରୁଣ ଜଳାଣି । ଚଳାଉ ମାଂସ, ସାଦା ତରକାରି, ଓଉ ଖଟା, ପାପୁଡ଼ ବାସନାରେ ଅଜାଙ୍କ ପାଟିରୁ ନାଳ ଝୋପି ପଡ଼ୁଛି ।

ପିଲେ ସବୁ ପତର ପକାଇ ସେପଟେ ସେପଟେ ଠୁକି ହେଲେ । ଅଜା ଗୁଲାକି କରି ସବୁ ଜିନିଷ ବେଶୀ ବେଶୀ କରି ଲୁଚେଇ ରଖିଥିଲେ । ବଢ଼ାବଢ଼ି କରି ବସିଲା ବେଳକୁ ପାଣି କେହିପେ ନାହିଁ । ପାଣି ବାଲଟିଏ ଆଣିବା ପାଇଁ ନଈ କୂଳକୁ ଗଲେ । ବୁଦ୍ଧିଆ ସୁଯୋଗ ଉଣ୍ଡୁଥିଲା ଲଙ୍କା ଗୁଣ୍ଡ ପ୍ୟାକେଟଟା ଖୋଲି ସବୁଥିରେ ପୂରେଇ ପୂରେଇ ଗୋଳେଇ ଦେଲା । ରହ ବୁଢ଼ା ମୁଁ ଘର ଦେଖିବୁ ଆଜି । ବୁଢ଼ା ପାଣି ଧରି ଆସି ଲଣ୍ଡବଣ୍ଡ ହୋଇ ଖାଇବାକୁ ବସିଗଲା । ଚଳାଉ ଟିକଏ ଖାଇ ମାଉଁସ ତରକାରୀରୁ ହାପୁଡ଼ ଦେଇଛି ଆଉ ପିବ କୁଆଡ଼େ ତା' ତାଙ୍କୁ ବାଟେ ଚେନ୍ଦୁଲିଆ ବଗୁ କାମୁଡ଼ିଲା । ମାଲୋ...ବୋପାଲୋ

ହୋଇ ଶଙ୍କୁଡ଼ି ପରି ଛଟପଟ ହେଲା । ଆଖିରୁ କାନରୁ ପାଣି ଗଡ଼ିଲା; ପେଟଟା ମୋଡ଼ି ହୋଇ ତଳବ ହେଲା । ଅଜା ଖାଇବା ଜିନିଷ ଗୁଡ଼କୁ ଲଙ୍ଗଳା ମୁକୁଳା ହୋଇ ଝାଡ଼ା ଧାଇଁଲେ । ପିଲେ ଦୂରରୁ ମଜା ଦେଖି ହସୁଥାନ୍ତି । ଏତିକି ବେଳକୁ ଫେରନ୍ତା ବସ୍ ହର୍ଣ୍ଣଦେଲା । ପିଲେ ଜିନିଷ ପତ୍ର ଧରି ଧାଇଁ ଧାଇଁ ବସ୍‌ରେ ଚଢ଼ିଗଲେ । ବସ୍ ଗୁଡ଼ିଦେଲା । ବୁଢ଼ା ନଈକୂଳେ ଝାଡ଼ା ବସିଛି ।

ଭୋକ ଉପାସରେ ମଶା ଡାଆଁଶ ମେଳରେ ବଙ୍ଗଳା ବାରଣ୍ଡାରେ ବଣଜନ୍ତୁଙ୍କ ଭୟଙ୍କର ରଡ଼ିରେ ବୁଢ଼ା ରାତିସାରା ଅନିଦ୍ରା ହୋଇ ତା ଆରଦିନ ଦଶଟା ବେଳକୁ ଠେଳି ଠେଳି ଗାଁରେ ପହଞ୍ଚିଲା । ପିଲମାନେ ତାକୁ ଦେଖିଲା ମାତ୍ରେ ଛୁଗେଲ୍‌ଇ ଛୁଗୁଲେଇ କହିଲେ "ଗଣି ଅଜା ! ବଣଭୋଜି କେମିତି ମଜା !!!"



(କୁନ୍ଦବଉଜ ପତ୍ରିକାର ୧୯୭୨ ମସିହା ଜାନୁଆରୀ ମାସରେ ପ୍ରକାଶିତ)

# ଜଟିଆ ଅଜା ଓ ଜର୍ସି ଗାଈ

ଜଟିଆ ଅଜା ଯେତେବେଳେ ଅଜାଣତରେ ପଡ଼ୋଶୀଘର ଯୋଗୀ ଭାଇନାଙ୍କ ଗୁହାଳ ଆଡ଼କୁ ନଜରଟା ବୁଲେଇ ଆଣନ୍ତି ମନଟା ଖାଲି ଗୁରେଇ ବଦାର ହୋଇଯାଏ । ଓଃ ଶଳା ଗାଈ ନୁହେଁତ ଗୋଟାଏ ଗୋଟାଏ ହାତୀ ବଛା ହୋଇଛନ୍ତି । ଦେହରୁ ଖାଲି ତକ୍‌ତକ୍ ଖସି ପଡ଼ୁଛି । ଧଳା କଇଁପରି ଧୋବ ଫରଫର ବାଛୁରୀ ପୁଞ୍ଜାକ କନକନ ହୋଇ ଖାଲି କୁଦା ମାରୁଛନ୍ତି । ଯେତେବେଳେ ଖ୍ରମା ଗଉଡ଼ଟା ଗାଈ-ଗୁଡ଼ାକ ଆଡ଼ିବା ପରେ ପଛାରୁ କଦଳିଆ ଚରଗୁଡ଼ାକ ଠାଣି ଠାଣି ସର୍ ସର୍ କରି ବାଲଟି ବାଲଟି ଖିର ଦୁହିଁ ପକାଏ ଜଟ ଅଜାଙ୍କ ପାଟିରୁ ଝର ଝର ହୋଇ ନାଳ ଗୁଡ଼ାକ ବୋହିଆସେ । ଆହା ପିଲାଦିନେ କୁଆଡ଼େ ତାଙ୍କ ଘରେ ଗୋଟେ ଗାଈ ଥିଲା ସେ ଖିରରେ ଗାଧୋଉ ଥିଲେ । ଆଜି ସବୁ ସପନ ପରି ଲାଗୁଛି । ବୃକଶ୍ରୀ ବେଳରେ ଯାହା ଟିକିଏ ବୃଖୁଥିଲେ । ବୃକଶ୍ରୀ ଗଲାଦିନୁ ଭୁଲୁ ନାଲି କଟକଟ ଚା' ଢୁଣ୍ଡା ଖାଇ ପାଟି ପିତା ହୋଇ ଗଲାଣି । ଗାଈଟିଏ କିଣିବେ ବୋଲି କୋଉଦିନୁ ମନ କଲେଣି, ହେଲେ ହାତରେ ଧନ କାହିଁ । ବୁଢ଼ୀ ଠାକୁ ଯେତେ ବୁଝାଉଛନ୍ତି ଆଜିକାଲି ଗାଈ-ଟିଏ ଆଣିଲେ ଘିଅ, ଦହି, ଛେନା, ଯାହା ମନ କରିବା ଖାଇବା ଖିରରେ ପାଣି ମିଶାଇ ବିକିଲେ ପରା ହାତେ ହାତେ ଲାଭ, ବୁଢ଼ୀ କ'ଣ ବୁଝୁଛି । ଗାଈ ନାଁ ଧରିଲେ ଲାଙ୍ଗୁଡ଼ରେ ଠିଆ ହେଉଛି । କହୁଛି ଏ ବୁଢ଼ୀ ବୟସରେ ଘର କାମ କରି କରି ହାଡ଼ ଭାଙ୍ଗି ଗଲାଣି ଆହୁରି ଗାଈ କଥା କିଏ ବୁଝିବ । ଅଜା ଜୋକ ମୁହଁରେ ଲୁଣ ଦେଲା ପରି ତୁନି ରୁହନ୍ତି । ନିଜ ତ କରମକୋଡ଼ି କୁଠା ଟିକ ଦଟିକି କରନ୍ତିନ ।

ସେଦିନ କ ଯୋଗରେ ରାତି ପାହିଥିଲା କେଜାଣି ଜଟିଆ ଅଜା ସକାଳୁ ଦାଣ୍ଡ କବାଟ ଖୋଲି ବାହାରକୁ ବାହାରୁ ବାହାରୁ ତାଙ୍କ ନଜର

ଚଉଡ଼ଗଲେ ଯୋଗୀ ଭଇନାଙ୍କ ଗୁହାଳଆଡ଼େ । ଝୁମା ଗଉଡ଼ଟା ଗୋଟାଏ ବଗିଚ ବାଲ୍‌ଟିରେ ଧରି ଗାଈ ଦୁହିଁ ବସିଛି । ସତେ ଯେମିତି ଖିର ବର୍ଷା ହେଉଛି । କଟିଆ ଅଜା ତାଙ୍କ ବାଡ଼ ପାଖକୁ ଯାଇ ଲୋଭିଲା ଆଖିରେ ଚୁହିଁ ରହିଲେ । ଯୋଗୀ ଭଇନାଙ୍କ ପୀତ ଚକ୍‌କା ରାହାବାଳୀ ନବାବକୁ ଜବାବ ଦେବ ତା ଲମ୍ବା ମୁହଁଟାକୁ ଘୁଞ୍ଚି ଘୁଞ୍ଚି ଶୁଙ୍କଣେଇ ଶୁଙ୍କେଇ କହିଲା ଆରେ ଝୁମା ! ବାଡ଼ ସେପଟେ କିଏ ଗୋଟାଏ ଡ଼ାହାଣୀ ପରି ଗାଈ ଦୁହିଁ ଦେଖୁଛି । ଝୁମା ଗାଈ ଦୁହିଁଆ ହେବେ ଗୁହାଳ ଭିତରେ ଦୁହିଁ । ଆରେ ଏଇଟା କଣ ଗାଈ ଦେଖିନି କିରେ, ଚୋର ଯଦି ଗାଈ ଦେଖିବା ପାଇଁ ମନ କଣି ପକାଉନୁ । ଗୋଟାଏ ପରି ଗାଈକୁ ଏମିତି ଡ଼ାହାଣୀ ପରି ଶୋଷି ଯାଉଛି କିଆଁ ।

ଅଜାଙ୍କ ଦେହରେ ନିଆଁ ଲାଗିଗଲା । ଅପମାନରେ ଜଳି ଯାଇ ଲଙ୍ଗୁଡ଼ ଜାକି ଘରକୁ ପଶି ଯାଇ ବୁଢ଼ୀ ଆଗରେ କହିଲେ । ବୁଢ଼ୀ ନିଆଁରେ ଘିଅ ଢ଼ାଳିଲା ପରି ଆହୁରି ଟୋଳ୍‌ଟ ମାରି କହିଲା ତମେତ ଅଧା ବକାଳି ତମେ କିଆଁ କାହାର ମୂଲ କରି ଯାଉଛ ।

ଅଜା ଲଙ୍ଗୁଡ଼ରେ ଠିଆ ହୋଇ ଗର୍ଜନ କଲେ, କଣ କହିଲୁ ମୁଁ ଅଧା ବକାଳି । ବେଶ୍ ଆଜ ଯଦି ମୁଁ ଗୋଟାଏ ହାତୀ ପରି ଗାଈ ଏ ଦୁଆରେ ନବାନ୍ଧିଛି ପାଣିକି ପାଣି ନେବିନି । ଚଳା ମତେ ଭିକାରୀ ପାଇଲ । ମୁଁ ମର୍ଦ୍ଦରଜ ଘର ପିଲା । କର୍ପୂର ସିନା ଉଡ଼ି ଯାଇଛି । କନାଟା ଉଡ଼ି ଯାଇନି ।

ଅଜା ତମ ତମ ହୋଇ ବାକ୍ସ, ଟ୍ରଙ୍କ ଦରଣ୍ଡି ପକାଇଲେ ମଳି-ମଳି ଜମା ପାଞ୍ଚ ଟଙ୍କା ପଇଁତିରିଶ ପଇସା ପଡ଼ିଛି । ଏଥିରେ ଗାଈ କଣିବେ । ଅଜାଙ୍କ ଆଗରେ ଜମି କବଲାଟା ପଡ଼ି ଗଲା । ବାସ୍ ହୋଇଗଲା । ଜମି କବଲାଟାକୁ ହାତରେ ଧରି ଧାଇଁଲେ ଜଗୁ ସାହୁ ଚେଲା ଘରକୁ । ବହୁତ ଖୋସାମତି ମହମତ କରି ଠିକା ହଜାର ଜମି ବନ୍ଧା ଦେଇ ଆଣିଲେ । ଝୁମା ଗଉଡ଼ ଗୋଠକୁ ଯାଇ ବାଛି ବାଛି ହାତୀ ଘଡ଼ି ପରି ଜର୍ସି ଗାଈଟିଏ କଣିଲେ । ଠିକଏ ଓଳେଇ ଓ ମାରଣା ହଉ ଚାନ୍ଦେକ ଘର ପୁଣି କଟିଘତ । ଦେଖୁ ଦେଖୁ ଅଖି ଝେଁସି ହୋଇଯିବ ।

ଯୋଟାଏ ମାଇପ ଦେଖି ହ୍ୱଂସାରେ ଜଳିଯିବ । ଆଉ ବୁଢ଼ୀ···ଟା ବୋପ କାନ୍ଦକ ଇମିତି ଗାଇ ଦେଖି ନାହିଁବ ।

ସନ୍ଧ୍ୟା ବେଳକୁ ଖମା ଗଉଡ଼ ଆଣି ତାଙ୍କ ଦୁଆରେ ଗାଈ ବାନ୍ଧି ଦେଇ ଶକତ ବାଲିଟେ ଏ ଖିର ଦୁହିଁ ଦେଇଗଲା । ଅଜା ସମ୍ଭାଳି ନପାରି ସେଇ କଞ୍ଚା ଖିରରୁ ଦୋଳାଏ ପିଇଗଲେ । ଓଃ କ ମିଠା··· । ଆଜ ବାଡ଼ିଟା ମନ ବୋଧୁଆ ଖାଇବେ । କାଲି ସକାଳୁ ଖିର ସବୁ ଲାଗୁଆ ଯିବ । ନଜେ ଗୋଟିଏ ଲଟର ଏ ଓଳ ସେ ଓଳ ହେଲେ ଓଡ଼ର ସେଇ ବାଡ଼ରେ ଖିର ଛେନା ମନ ଇଚ୍ଛା ଦୁଇପ୍ରାଣୀ ଖାଇଲେ, ସକାଳକୁ ଦହି ବସିଲା । ସେଇ ଖୁସିରେ ଜଣିଆ ଅଜା ଆରାମରେ ଶୋଇଗଲେ । କେମିତି ରାତି ପାହିଲେ ଗାଈକୁ ନେଇ ପଡ଼ଶା ଘରକୁ ଦେଖାଇ ଦାଣ୍ଡ ଦୁଆରେ ବାନ୍ଧିବେ । ଆଉ ଖମା ଗଉଡ଼କୁ କହିବେ ସେଇ ଦାଣ୍ଡରେ ସମସ୍ତଙ୍କୁ ଦେଖାଇ ଦୁହିଁବ । ବହୁପାକ ଥରକୁ ଥର ଉଠୁଥାନ୍ତି । କାଳ ଅନ୍ଧାରୁ ହଠାତ୍ ନଦଙ୍ଗା ଘମାଘୋଟିଆ ଲାଗିଯାଇଥିଲା । ଗାଈର ହମ୍ବା ରଡ଼ ଶୁଣି ଗୁଜୁଙ୍କନା ଉଠିବସିଲେ । ନସର ପସର ହୋଇ ଅଧିଆ ମୁହଁରେ ଗାଈ ପାଖକୁ ଧାଇଁଗଲେ । ଗାଈଟା ସେତେବେଳକୁ ପଘା ଛିଣ୍ଡେଇ ମାରଣା ଷଣ୍ଢ ପରି ଫିଁ-ଫିଁ ହେଉଛି । ରାତିରେ ତାକୁ ଖାଇବାକୁ ଦେବାକୁ ଅଜା ଭୁଲି ଯାଇଛନ୍ତି ।

ଅଜା ତାକୁ କଅଁଳେଇ ସଅଁଳେଇ ଦଉଡ଼ିଟାକୁ ଧରି ଦାଣ୍ଡରେ ବାନ୍ଧିବାକୁ ଟାଣିଲେ । ଆଉକ ସମ୍ଭାଳା ପଡ଼େ । ଗାଈତ ଶିଙ୍ଘ ହଲାଇ ବାଘୁଣୀ ପରି ଧାଇଁ ଆସି ତାଙ୍କୁ ଦୁ'ଶିଙ୍ଘରେ ଟେକି କଚୁଡ଼ି ଦେଇ ଦେ ଦଉଡ଼ । ପଘାରେ ଅଜାଙ୍କ ଜାବ ପଡ଼ି ଯାଇଛି । ଅଜା ଜୀବନ ବିକଳରେ ଗାଈକୁ ଗୁଡ଼ୁ ନାହାନ୍ତି । ଗାଈଟା ବାଇଆ ହାତୀ ପରି ମାଡ଼ି ଚକଟି ଦାଣ୍ଡକୁ ଯିବାକୁ ବାଟ ନପାଇ ମୁଷାଣ୍ଡି କରି ଅଗଣା କବାଟକୁ ପେଲି ଦେଇ ଦାଣ୍ଡେ ଦାଣ୍ଡେ ଦଉଡ଼ିଲା । ଅଜା ତା' ସାଙ୍ଗରେ ଖଣ୍ଡେ ବାଟ ଘୁସୁରି ଗଲେ । ଦଉଡ଼କୁ ଛୁଟେଇ କରି ଖଣ୍ଡେ ଦୂରରେ ଫୋପାଡ଼ି ହୋଇ ପଡ଼ିଲେ । ଚେତା ବୁଡ଼ିଗଲା ।

ଯେତେବେଳେ ଚେତା ଆସିଲା ଦେଖିଲେ ଖଟ ଉପରେ ଶୋଇ-ଛନ୍ତି । ଲୋକମାନେ ତାଙ୍କୁ ବେଢ଼ିଛନ୍ତି । ବୁଢ଼ୀ ରଡ଼ି ପକେଇ ମୁଣ୍ଡ

ଉପରେ ବାହୁନୁଛି । ଦେହ ଯାକ ଚମ ଗୁଡ଼ ଯାଇ ହୁ ହୁ ପୋଡ଼ୁଛି । ମୁହଁଟା କଖାରୁ ପରି ଫୁଲି ଯାଉଛି । ଶଳା ଗାଈଟା କଣ ନକଲା । ଅଜା ଧକଳ ହୋଇ କାହାକୁ ଗୋଟାକୁ ଗାଈ କଥା ପଚାରିଲେ । ଯୋଗୀ ଭାଇନା ତାଙ୍କ ପାକୁଆ ପାଟି ଥରାଇ ଥରାଇ କହିଲେ ଗାଈ ଆଉ ଅଛି... ଉଗି ଘର ବାଡ଼ରେ ପଶି ଫସଲ ଖାଇଗଲା ବୋଲି ତାଙ୍କର ଗୃହିଣୀ ମଣିଷ ତାକୁ ଦଉଡ଼ିରେ ବାନ୍ଧି ନେଇ କାଞ୍ଜିଆ ଗୋରଖାନାରେ ଭର୍ତ୍ତି ଦେଇ ଆସିଲେ । ହଇରେ ମାରଣା ଗାଈଟାକୁ କିଏଁ ଜଗୁ ଥିଲୁ ? ଆଜି ଯଦି ତାକୁ ମୁକାଳି ନଆଣିବୁ କାଲିକୁ ବାରଟଙ୍କା ହଗିବୁ । ଆଜି ଛ' ଟଙ୍କା ପଡ଼ିବ ।

ଜଟି ଅଜା ଆଉ ଶୁଣି ପାରିଲେନି । ତାଙ୍କ ପାଖରେ ଜମା ପାଞ୍ଚ ଟଙ୍କା ପଇଁତିରିଶ ପଇସା ଅଛି । କିଏ ଯାଇ ଗାଈକୁ ଆଣିବ ? ସେତ ଦରମରା ହୋଇ ପଡ଼ିଛନ୍ତି ନାଃ ଆଉ ଦରକାର ନାହିଁ ଯେତିକ ହେଲା ସେତିକ । କାନ ମୋଡ଼ି ଦଶଥର ଝୁପୁଡ଼ା ମରି ହେଲେ ଆଉ ଜୀବନରେ ଗାଈ ନାଁ ଧରିବେନି । ଖୁମା ଗଉଡ଼କୁ ଡ଼ାକେଇ ପଠେଇଲେ । ଶୁଣିଲେ ସେ ଟଙ୍କା ଧରି ତାଙ୍କ ଗାଁ ଆଡ଼କୁ କାଞ୍ଜିଆରୁ ଗଲାଣି । ହେ ଭଗବାନ ମହୁରଗରୁ ଯାଇ କାନ୍ଥାରରେ ସେ ପଡ଼ିଲେ··· । ଧନ ହାନି ପ୍ରାଣପିଡ଼ା ସବୁ ତାଙ୍କ ଯୋଗ ଥିଲା······ ।



(କଳମୀନା ପତ୍ରିକାର ୧୯୮୦ ମସିହାରେ ଫେବୃୟାରୀ ଓ ମାର୍ଚ୍ଚ ମାସରେ ପ୍ରକାଶିତ)

# ରଙ୍କ ଅଜା ଅକଲ ଶିଖିଲେ

ବାଙ୍କପୁରର ରଙ୍କ ଅଜାଙ୍କ ନାଁ ଧରିଲେ ଦିନସାରା ଦାନା ମିଳିବନି । ଘର ରଙ୍କୁଣୀ ଲୋକଟାଏ । ଦିହରୁ ମଳି ଟିକିଏ ବି କାହାକୁ ଦେବେନି ତାଙ୍କ ବାପ ମା ଠିକ୍ ଜାଣିଲା ପରି ନାଁଟି ତାଙ୍କର ରଙ୍କ ଦେଇଛନ୍ତି । ଅକାଳେ ସକାଳେ କୁଣିଆଟିଏ ଦେଖିଗଲେ ବୁଢ଼ାର ନାଡି ଛିଡିଯାଏ । ଭିକାରୀକୁ ଖଣ୍ଡେ ଦୂରରୁ ଦେଖିଲେ ଠେଙ୍ଗାଧରି ଗୋଡ଼ାଏ । ଭଗବାନ ଜାଣିକରି ତାର ଘରକୁ ଶଲେଇ ଛୁଆଟିଏ ବି ଦେଇ ନାହାନ୍ତି । କିନ୍ତୁ ତାଙ୍କ କପାଳକୁ ତାଙ୍କ ଘରଣୀ ମେଙ୍କୀ ଆଈ ଘର ବଦଖର୍ଚ୍ଚି । ସେଥିପାଇଁ ବୁଢ଼ା ତାଙ୍କ ଗୋଡ଼େ ଜଗିଥାଏ । କେତେବେଳେ କଣ କାଳେ ଖର୍ଚ୍ଚ କରିଦେବ କାହାକୁ କଣ ଦେଇ ଦେବ । ଶଶୁର ଘରୁ ଶଳା ଶାଳୀ, ଝିଆରୀ ପୁତୁରା, ଯେତେ ଉଦିକ ବିକଳ ହୋଇ ଅପା ଘରକୁ ଆସିବେ ବୋଲି ଚିଠି ଦିଅନ୍ତି, ଖବର ପଠାନ୍ତି ବୁଢା ଏ କାନରେ ପୂରେଇ ସେ କାନରେ ବାହାର କରି ଦିଏ । କରେ ବାବା ଏଠି କଣ ମୋଫତ ପଡିଛି କି ? ଜାଣି ଜାଣି ବୁଢା ଚିଠିକୁ ଚିରି ଦିଏ । ବୁଢୀ ଆଗରେ କହେନି ।

ଏ ବର୍ଷ ବାଙ୍କପୁରରେ ନୂଆକରି ଲକ୍ଷ୍ମୀ ଯାତରା ଆରମ୍ଭ ହେଲା । ଚାନ୍ଦା ଭେଦା ହୋଇ ଖୁବ୍ ଯାକ ଜମକରେ ଯାତ୍ରା ଯାଗା ନେଲା ନାଲି ଲାଇଟରେ ଝଲମଲ କଲା । ଦିନରାତି ମାଇକ ରଡ଼ିଲା । ସାତଦିନ ଚାଲିବ । ଶେଷ ଦୁଇ ଦିନ ନାମଯାଦା ଯାତ୍ରାବାଲା ସୁଆଙ୍ଗ କରିବେ । ଆଗରୁ ବଇନା ନେଇଛନ୍ତି । ଗାଁରେ ଖାଲି କୁଣିଆ ମଇଷି ଗାଡି ମଟର ଧରି ଆସି ହାଜର ହେଲେ । କେତେ ଦୋକାନ ବଜାର ସହରରୁ ଆସି ଖୋଲି ଦେଲେ ।

ବୁଢା ଏ ସବୁ ଦେଖି ହେଲେକା ହୋଇଗଲେ । କାଲେ ଶଗୁର ଘର ଗାଁରୁ କିଏ ଆସି ପହଞ୍ଚି ଯିବ ଅଯଥା ଗୁଡ଼ାଏ ଡଣ୍ଡରେ ପଡ଼ିବାକୁ ହେବ । ଆଗରୁ ବାଟ କାଟିବା ଦରକାର । ସେ ବୁଢ଼ୀକୁ ଆଡେଇନ୍ତି ସାକୁଲେଇ ହୋଇ କହିଲେ ତମ ଗାଁ ଆଡ଼େ ବୁଲି ବୁଲି ଆସିବା । ତମ ଗାଁର ଗଉଡ଼ଟାଏ ଆସିଥିଲା କହୁଥିଲା ତମ ବାପାଙ୍କ ଦେହ ଭଲ ନାହିଁ । ଯିବାକୁ ଖବର ଦେଇଛନ୍ତି ।

ଏତକ ଯେମିତି ବୁଢ଼ୀ ଶୁଣି ଦେଇଛି ରାଗରେ ତମ୍ପା ସାପ ପରି ଫଁ ଫଁ ହେଲା । ମଲା ତମେ କେଉଁ ସତିଆ ଲୋକଟାଏ ମ ... ହୋନ୍ତି ପରା ଆମ ବଙ୍କୁ ଶଙ୍କୁ ଚିଠି ଦେଇଛନ୍ତି ପନ୍ଦର ଦିନ ଦଶହରା ବେଳେ ଆସି ପହଞ୍ଚିବେ । ଦି'ଦିନ ରହି ସହର ଦେଖି ଯିବେ । ବୁଢ଼ୀ ଗରଗର ହୋଇ କହିଲା ।

ବୁଢ଼ାକୁ ଝୋଲା ମାରିନେଲା । ଦି ଜଣ ମଣିଷ ଦି'ଦିନ ରହିବେ । ଏ କଅାଁଳଗା ଗାଁ । ବାଲି ଗୁଡ଼ାକ କାହିଁକି ଏତେ ସୁଆଙ୍ଗ ଲଗେଇଛନ୍ତି । କେଉଁ ଛଟକରେ ଲୁଚି ଲୁଚି ଗୁହାରି ଭେଦା ଉଦ୍ଭେଇ ଦେଲେ । ପଇସା ଟିଏ ଦେଇନି ଏଆଡେ ପୁଣି ଦିଜଣ ମଣିଷ ଆସିବେ ଦି'ଦିନ ପୋଷି ହେବେ । ନାଇଁରେ ବାବା ଯେମିତି ହେଲେ କିଛି ଉପାୟ କରିବାକୁ ହେବ । ଅଜା କିଛି ନକହି ମନ କଥା ମନରେ ମାରି ଯାହି ତାହି ଦିଟା ଖାଇଦେଇ ଉଠିଗଲେ । କୋଉ ପେଟକୁ ଭାତ ଯାଉଛି । ଝଣ୍ଡିଆ ଦଉଡ଼ି ଖଟିଆଟା ଉପରେ ଗଡ଼େଇ ତଡ଼େଇ ହୋଇ ସାରା ରାତି ବେଳଟାରେ ଶୋଇ ଶୋଇ ଉପାୟ ପାଞ୍ଚିଲେ । ବେଳ ଥାଉଁ ବନ୍ଧ ବାନ୍ଧିବାକୁ ପଡ଼ିବ । ମିଳିଗଲା ଗୋଟେ ମଉକା... ସାଙ୍ଗେ ସାଙ୍ଗେ ଖଟ ଉପରୁ ଡିଆଁଟାଏ ମାରି ଉଠି ପଡ଼ିଲେ । କୁର୍ତ୍ତା ପକେଟରୁ କଲମଟି କାଢ଼ି କାଗଜ ଖଣ୍ଡିଏ ଖାତାରୁ ଚିରି ଆଣି ଚିଠିଟିଏ ଲେଖିଦେଲେ ।

ଆଦରର ବଙ୍କୁ, ଶଙ୍କୁ ଜାଣିବ,

ତୁମେ ସହର ଦେଖି ଆସିବ ବୋଲି ଜାଣିଲି । କିନ୍ତୁ ତୁମ ଅଜାଙ୍କୁ ଦୁଇ ଦିନ ହେଲା ଜ୍ୱର । ସେ ବିଛଣାରୁ ଉଠୁନାହାଁନ୍ତି । ଘରେ ରନ୍ଧା ବଢ଼ା ସବୁ ବନ୍ଦ । ମୁଁ ତାଙ୍କୁ କାଲି ନେଇ ବଡ ଡାକ୍ତରଖାନାକୁ ଯିବି ତମେମାନେ ଅଯଥା ଆସିବନି । ମୋ ଠାରୁ ଚିଠି ପାଇଲେ ଆସିବ

ଇତ୍ୟାଦି ଇତ୍ୟାଦି······ଶତି ଖଣ୍ଡିକ ଧରି ତରତର ହୋଇ ସେ ଗାଁ ଗଉଡ ହାତରେ ଦେଇଦେଲେ । ମନେ ମନେ ଖୁସିଟାଏ ହୋଇ କହିଲେ ଠିକ ହେବଟା ତମେ ରଙ୍କ ଦାସକୁ ଚିହ୍ନି ନ । ଯାତରା ଦେଖି ଆସିବେ, ଦି'ଦିନ ଏଠି ମେଘଫଳ ଗିଳିବେ । କାଞ୍ଜି ଶିଠି ପାଇ ଯାଇ ମନକୁ ମନ ମୋଟା ହୋଇ ରହିବେ ।

ଏବେ ବୁଢ଼ୀ ଭଇମାନେ ଆସିବେ ବୋଲି ବୁଢ଼ାକୁ ଲୁଚେଇ ଲୁଚେଇ ପିଠାପଣା ତିଆରି କରି କେତେ ପରକାରେ ସଜାଡ଼ୁଛି । ବୁଢ଼ା ମନେମନେ ହସୁଛି । ରାତିରେ ବୁଢ଼ା ପେଟଟିଏ ଠୁଙ୍କି ଦେଇ ମହା ଆରାମରେ ଶୋଇଲା । ଉପାସରେ ଶତ୍ରୁ ନାଶ କରିବା ଠିକ୍ ? ବୁଦ୍ଧିରେ ନୁହଁ ।

ସକାଳୁ କଣ ଗୋଟାଏ କୋଳାହଳରେ ବୁଢ଼ାର ଗହମ ନିଦଟା ଭାଙ୍ଗିଗଲା । ବୁଢ଼ା ଆଖି ମେଲେଇ ଗୁହାଳ ବେଳକୁ ମେଙ୍କି ଆଉଛି ଦଳେ ମାଇକିନା ଘେରିଯାଇ ବାହୁନା ଆରମ୍ଭ କରିଛନ୍ତି । ବୁଢ଼ୀ ଠୋ ଠୋ ହସୁଛି । ଅଜା ହଠାତ୍ ଚେଙ୍ଗା ହୋଇ ମାଇ ଆଖିକୁ ଭଲକରି ରଗଡ଼ା ରଗଡ଼ କରି ଖଟ ଉପରୁ ଗୋଟେ ଡିଆଁରେ ଠିଆ ହୋଇ ଚଉନରେଖି ଗୁହାଳ ବେଳକୁ ମେଙ୍କି ଆସି ଧସି ଧସି ଆସି କହିଲେ ହଇହେ ତମେ କଣ ଦେଖିକରି ଠୋ ଇହଲ, ବୋଉ, ଖୁଡ଼ି, ଦେଢ଼ଉଇ ଗାଁ ସାରା ହାଉରେ ଧାଉ ଭଲ ହେଲା । ସମସ୍ତେ ଆସିଛନ୍ତି ହେତେବେଳେ ଦି'ଦିନ ରହି ଯାତରା ଦେଖିସାରି ଯିବେ । ତୁମେ ଝଟ ଗଲ ମଙ୍ଗୁଆ କେଉଟକୁ କହି ଗଡ଼ିଆରୁ ମାଛ ମରେଇବ । ଆଉ ଦାମା ଗୌଡ଼ଙ୍କୁ କହିଲେ ନଡ଼ିଆ ଦି'ପୁଞ୍ଜା ପାରିଦେବ ପିଠା ହେବ । ବୁଢ଼ା ଆଙ୍ଗୁଠି ଗଣି ଗଣି ଦେଖିଲା-ମାଇକିନା, ଛୁଆ ମିଶି ହୋଇ ପଚାଶ ଜଣ । ଦିଖଣ୍ଡ ଶଗଡ଼ ଦାଣ୍ଡ ଦୁଆରେ ବନ୍ଧା ହୋଇଛି । ଯୋଗୁଁ ୪ଟା ଶଗଡ଼ିଆ ୨ ଜଣ ଏତିକ ସବୁ ଖାଇବେ । ପୁଣି ଗଡ଼ିଆରୁ ମାଛ ଧରା ହେବ, ଗଛରୁ ନଡ଼ିଆ ପରା ହେବ···ହେ ଭଗବାନ ଦି'ଜଣ ମଣିଷକୁ ଉଠୁ ଉଠୁ ଏ କୋଡ଼ରେ ପକେଇଲ । ଉଃ, ମୁଁ କାହିଁକି ଭଲ ଶିଠା ଦେଲି, ବୁଢ଼ା ରାଗରେ ଗାଲକୁ ଠୋ ଠୋ ଚାପୁଡ଼ା ମାରିଦେଲା···ଅଜା ସବୁ ଦିନ ପାଇଁ ଅକଲ ଶିଖିଲେ ସେ କଣ ଜାଣିଥିଲେ ତାଙ୍କ ପେଞ୍ଚଟା ଏମିତି ପରପେଞ୍ଚ ହେବ ବୋଲି ।

---

(ଜହ୍ନରାଇଜ ପତ୍ରିକାର ୧୯୭୪ ମସିହା ଜୁଲାଇ ମାସରେ ପ୍ରକାଶିତ)

# ହଟିଆ ଅଜାଙ୍କ ହଟହଟା ।

ହଟିଆ ଅଜାଙ୍କ ଝିଅ ଘର କେଶପୁର । ସେ ଗାଁରେ ନାଗ ଚତୁର୍ଥୀ ଓଷାଟି ଭାରି ଠାଣି । ସମସ୍ତେ ଓଷା କରନ୍ତି, ବାପ ଘର ମାନଙ୍କରୁ ଝିଅଘରମାନଙ୍କୁ ଭାର ବେଭାର ଯାଏ । ଝିଅ ଓଷା କରିବ ବୋଲି ଅଜା ସନ୍ତୁଳା ଚୂଡ଼ା, ପାଚିଲା କଦଳୀ କାନ୍ଧିଏ, ଆଙ୍ଗୁଠି ବହଳ ସରଦେଇ ବସା ଦହି ହାଣ୍ଡିଏ, ଗଣିଲଡ଼ୁ ଠୋପିଏ ସବୁ ସଜାଡ଼ି କରି ଅଜାଙ୍କୁ ଦେଇ ଝିଅ ଘରକୁ ପଠାଇଲେ । ଗଛରୁ ନଡ଼ିଆ ଦପୁଞ୍ଜା ଦେଇଥିଲେ । ଅଜା ସେଠାରେ ପହଞ୍ଚିଲା ବେଳକୁ ଓଷା ସରି ଚକଟା ଚକଟି ଚାଲିଛି । ସନ୍ତୁଳା ଚୂଡ଼ା, ନଡ଼ିଆ କୋରା, ଗୁଆଘିଅ, ଗଣିଙ୍ଗା ପାଚିଲା କଦଳୀ, ବସାଦହି ସବୁ ଗୋଟାଏ ବଡ଼ ଡେକଚିରେ ଚକଟା ହୋଇଥାଏ ଓଷା ବାଲିମାନେ ଖାଇବା ପାଇଁ । ଅଜା ଆଣିଥିବା ଜିନଷ ମଧ୍ୟ ସେଥିରେ ପଡ଼ିଲା । ଅଜାଙ୍କ ସମ୍ବନ୍ଧୁଣୀ ପଚାରିଲେ--ସମ୍ବନ୍ଧୀ ତୁମେ କଣ ଓଷା କର ? ଯଦି ନକରୁ ଥିବ ପଖାଳ ଟିକେ ଖାଇବ । ଆଜିତ ଆମ ସମସ୍ତଙ୍କର ଓଷା ସେଥିପାଇଁ ରନ୍ଧାବଢ଼ା ହୋଇନାହିଁ । ଅଜା ଦେଖିଲେ ଏ ଶୀତ ଦିନଟାରେ ଅବେଳଟାରେ କିଏ ପଖାଳ ଖାଉଛି ବରଂ ଓଷା କରନ୍ତି ବୋଲି କହିଲେ ସୁନ୍ଦର ଜଳଖିଆ ଭୋଜନ ଟାଏ ମିଳିବ । ସେ ଓଷା କରନ୍ତି ବୋଲି କହିଲେ ।

ବଢ଼ା ବଢ଼ି ହେଲା । ଅଜା ମୁହଁ ହାତ ଧୋଇ ଖାଇବା ପାଖରେ ବସିଗଲେ । ଓଃ କି ବାସନା, ଏକାଥରେ ତିନିଥାଳି ଠୁଙ୍କି ଦେଲେ ସେ ଚକଟାରୁ । ଇମିତି ଚକଟା ମିଳିଲେ ସେ ସବୁ ଓଷା କରନ୍ତେ ।

ଝିଅ ଘରେ ରହୁ ରହୁ ଆଠ ଦିନ ରହିଗଲେ । ଆଠଦିନ ଠେଇ ପୁଣି ବଡ଼ ଏକାଦଶୀ ପଡ଼ିଲା । ସମ୍ବନ୍ଧୀ ସମ୍ବନ୍ଧଣୀ ପୁଣି ଓଷାକଲେ

ଅଜା'ତ ଓଷା ମଜା ପାଇପାରନ୍ତି, ସେମାନେ ନମସ୍କାରୁଣୁ ଗାଧୋଇ ପାଧୋଇ ଶଢା ଚଳେଇ କାଠି ଏକାଦଶୀଆ ଗୁଜ କରିଗଲେ । ଏ ଘରୁ ରୁନ୍ଧିଁ ସେଘରୁ ରୁନ୍ଧିଁ ଜାଣନ୍ତେ ହେଲ ଗଲେଣି । କାଲି ଓଷା ପୂଜା କେତେବେଳେ ଚନ୍ଦ୍ରମା ଦହ୍ନ ଚକଠା ଚକଠି ହେବ ? ବେଳ ଗଡ଼ିଲାଣି । ସେତ ଜୀବନରେ ଓଷା କଳ୍ପନାଦାନ୍ତ ଏକେତ ସେ କ ଝକଝକିଆ ଲୋକ, ପେଟଟା ଭୋକରେ ଦରଣ୍ଡି ହୋଇ ଘ ଘ କଲାଣି । ମନେ ମନେ ସମ୍ବନ୍ଧୀ ଉପରେ ରକତ ଗୁଡ଼ିଲ ରୁଢ଼େଇ ଗଲେଣି । ସମ୍ଭାଳି ନପାରି ନ୍ତିଅକୁ ଡାକ ପଚାରିଲେ—ଆଲୋ ମା, ଏ କେମିତିଆ ଓଷ ଏଥରେ କଣ ଚକଟା ଚକଟି ନାହିଁ ? ନ୍ତିଅ କହିଲା ବାପା ଇଏ ପରା ଏକାଦଶୀ ରାତିକ ଥରେ ଖିଆପିବ ।

ଅଜା ବଡ଼ କଷ୍ଟରେ ଦାନପାଳ ଖଟ ଉପରେ ଗଡ଼େଇ ତଳେ ହୋଇ ଭୋକ ମାରିଲେ । ଇଏତ ପର ଘର ନିଜଘର ହୋଇଥିଲେ ଉପାସ ନା ଚଳେ, ମଗ ଗୁଡ଼ ପେଟେ କୁଟି ଦିଅନ୍ତେ । ହଉ ରାତିକ ଚଉଳସିଆ ଯଦି ଦେବେ ।

ସନ୍ଧ୍ୟା ବେଳକୁ ଗରମ କ୍ଷୀରି ଉଖୁଡ଼ା ତିଆରି ହେଲା । ମନ୍ଦିର ଦର୍ଶନ କରି ଆସିଲେ ପୂଜା ପୂଜି ହେବ ଖିଆ ପିଆ ହେବ । ସମସ୍ତେ ବାହାରିଲେ ମନ୍ଦିରକୁ ଅଜାଙ୍କୁ ଡାକିବାରୁ ସେଠ କମ୍ପୁଛନ୍ତି କହି ସିଛରେ ଗାଳେଇ ଶୋଇଲେ । ଅଜାଙ୍କୁ ଘର ଜଗେଇ ସମସ୍ତେ ଗଲେ । ସେମାନେ ଯିବାରୁ ଅଜା ଦାଣ୍ଡ କବାଟଟି ଦେଇ ଆସି ଭଣ୍ଡାରଘର ଘରେ ପଶିଲେ । ଗରମ ଉଡ଼ା ଉଡ଼ା କ୍ଷୀରି ଥାଳିଏ ଆଣି ବସିଗଲେ । ହାତରେ ଖଞ୍ଜି ଖଞ୍ଜି ଥାଳିକ ସଫା କରି ଦେଲେ । ଜିଭଟା ଟିକିଏ ପୋଡ଼ ଯାଇଛି, ଯାଉ କାଲିକି ଭଲ ହୋଇଯିବ । ଓଃ ଏତେବେଳକୁ ପେଟଟା ଶାନ୍ତ ପଡ଼ିଲା । ମୁହଁ ହାତ ଧୋଇ ଥାଳିଟା ଧୁଆଧୁଇ କରି ରଖିଦେଇ ଖଟ ଉପରେ ଗଡ଼ି ପଡ଼ିଲେ । କେତେବେଳେ ନିଦ ହୋଇଗଲା ଜାଣି ପାରିଲେ ନା ।

ସେମାନେ ଫେରି ଡକାଡ଼କି ବାହେ କହିବାରେ ବହୁ କଷ୍ଟରେ ଉଠି କବାଟ ଖୋଲିଲେ । ସମ୍ବନ୍ଧୀ ପୂଜା ପୂଜି ସାରି ଖାଇବାକୁ

ଖାଇବାକୁ ଡାକିଲେ । ଅଜା ସମ୍ବନ୍ଧୀଙ୍କ ସଙ୍ଗରେ ପୁଣି ଗୁଡ଼ଏ ଗପିଗଲେ । ଏଥର ଅଗ୍ନମରେ ଶୋଇଗଲେ ।

ଠିକ୍ ରାତି ଅଧ ବେଳକୁ ଅଜାଙ୍କ ନିଦଟା ଭାଙ୍ଗିଗଲା । ଭୋକିଲା ପେଟରେ ଅତଲା ଖୀରି ଚଢ଼ାଇ ପେଟଟା ଘଡ଼ଘଡ଼ ହୋଇ ତରତରିଆ ହେଲ ଲାଗୁଥଟା ମାତ୍ର ହେଲାଣି କଣ କରିବେ ରାତିଟାରେ କୁଆଡ଼େ ଯିବେ । ଏଠେଇ ସବୁ ବନ୍ଦ ଆଡ଼େ ଝାଡ଼ା ଯାଆନ୍ତି । ବନ୍ଧଟା ଗାଁ ମୁଣ୍ଡରେ । ଏକୁଟିଆ ଯିବାକୁ ଡର ଲାଗୁଛି । କାହାକୁ ଡାକିବେ । ଲାଜକଥା ଏତେ ଆଉ ସମ୍ଭାଳି ପାରୁ ନାହାନ୍ତି । କବାଟ କଣକୁ ଗାମୁଛାଟି ପାରିଦେଇ ତା ଉପରେ ଦୁଇ ଜଲେ। ତାକୁ ଗୁଡ଼ାଗୁଡ଼ି କରି ଥୋଇ ଦେଲେ । ରାତି ପାହିଲେ ଅନ୍ଧାରୁଆରୁ ଉଠି ବନ୍ଧରେ ଯାଇ ସଫା ସୁତୁରା ହୋଇ ଗାଁକୁ ପଳେଇବେ । ଆଉ ଜଦ ନାହିଁ । ଠିକ୍ ରାତି ପାହାପାହା ବେଳକୁ ଗୁହ ବୁଜୁଳାଟିକୁ କାଖରେ ଯାକି ଉପରେ ଚଦର ଘୋଡ଼େଇ ହୋଇ ଧୀରେ କବାଟ ଖୋଲି ବାହାରି ପଡ଼ିଲା ବେଳକୁ ପଛରୁ ସମ୍ବନ୍ଧୁଣୀ ଅଗଣା ଓଳାଉ ଓଳାଉ ଡାକ ଛାଡ଼ିଲା ସମ୍ବନ୍ଧୀ କଣ ସକାଳୁ ଘରକୁ ବାହାରିଲଣି, ନାଇଁ ନାଇଁ, ଖାଇ ପିଇ ଯିବ । ଆଉ କ ଅଜା ଶୁଣନ୍ତି କାଳେ ଧରା ପଡ଼ିଯିବେ ବୋଲି ତରତରରେ ଧପାଇଲେ । ସମ୍ବନ୍ଧୁଣି ସମ୍ବନ୍ଧୀଙ୍କୁ ଡାକ ପକେଇଲେ ହେଇଟି ସମ୍ବନ୍ଧୀ କୁଆଡ଼େ ସକାଳୁ ଘରକୁ ବାହାରିଲେଣି ଯାଅ । ଫେରେଇ କରି ଆଣିବ । କାଲିଠାରୁ ଓଷା କରିଛନ୍ତି ଭାତ ଦୁଇଟା ଖାଇ ପିଇ ଯିବେ ।

ସମ୍ବନ୍ଧୀ ବଚରା କାର୍ତ୍ତିକ ସ୍ନାନ କରି ମଠ। ପାଲଟି ଥିଲେ । ସଙ୍ଗେ ସଙ୍ଗେ ଧାଇଁଲେ । ଇଏ ଗୋଟେ କଥା ଏମିତ ଅଧୁଆ ମୁହଁରେ ବାସି ଉପାସରେ ଯିବେ । ଗାଁ ଦାଣ୍ଡରେ ସେତେବେଳକୁ ଲୋକ ଜମିଗଲେଣି । କିଏ ଗାଧୋଇ ଫେରୁଛି, କିଏ ଦାନ୍ତ ଘଷୁଛି, କିଏ ନିଆଁ ଜାଳି ସେକି ହେଉଛି । ଅଜା ଠିକ୍ ମଝି ଦାଣ୍ଡରେ ହେଲା ବେଳକୁ

ସମ୍ବନ୍ଧୀ ଆସି ପଛରୁ ଅଜାଙ୍କ ବାଁ ହାତଟାକୁ ଟାଣି ଧରିଲେ । କାଖରେ ଜାକିହବା ଗୁହ ପୁଟୁଳିଟା ଲଥ୍ କରି ତଳେ ପଡ଼ିଗଲା । ଫିଟିଯାଇ ଗୁହଆଡ଼େ ଖେଳିଲା ବିଛାଇ ଛିଟିକି ଗଲା । ସମ୍ବନ୍ଧୀଙ୍କ ଦେହସାରା ହୋଇଗଲା । ଗନ୍ଧରେ ନାକ ଫାଟିଗଲା । ସମ୍ବନ୍ଧୀ ବଡ଼ରା ଉହୁଁ ଉହୁଁ ହୋଇ ବାନ୍ତି କରି ପକେଇଲେ । ଦାଣ୍ଡରେ ଥିବା ଲୋକେ ଆସି ସେମାନଙ୍କ ଗୁହଛାଟ ଗଦା ହୋଇଗଲେ । ଲାଜ ଅପମାନରେ ଜଳି ଯାଇ ଅଜା ବଡ଼ରା କେମୁହାଁ ହୋଇ ନିଜ ଗାଁ ଆଡ଼େ ଦୌଡ଼ିଲେ । ପଛରୁ ଗାଁ ଲୋକଙ୍କର ହୋ—ହୋ—ହସ ସାଙ୍ଗକୁ ଟାହି ଟାପରା ଶୁଭୁଥାଏ । ମିଠିଆ ଅଜା ହଟହଟା ହେଲେ ।



(କୁଆଁତାରା ପତ୍ରିକାର ୧୯୭୯-୮୦ ମସିହାରେ ପ୍ରକାଶିତ)

# ଢେଙ୍ଗୁ ଅଜାଙ୍କ ଢେଙ୍ଗାଢିଆ

ଢେଙ୍ଗୁ ଅଜାଙ୍କ ଘରଣୀ ବେଙ୍ଗି ଆଈ ସେଦିନ ଶୁଖୁଆ ଦଇଠା ପାଇଁ ମାଉଖାଇ ଗଡ଼ିକର ବାପ ଘରକୁ ପଳେଇଥିଲେ । ଏବେତ ଦାନ୍ତ ମଳଖିଆ ବୁଢ଼ାଟା, ମାଛ ମାଉଁସରେ ପଇସା ଖର୍ଚ୍ଚ ହୋଇଯିବ ବୋଲି ବୁଢ଼ିକୁ ଜବରଦସ୍ତ ଘାଷା ନେବାକୁ ବାଧ କରେଇଛି । ଅଉ ନାକ ମଧ ଆଇଁସ ଛୁଉ ବେକରେ ତୁଳସୀମାଳା ମୁଣ୍ଡରେ ରାମାନନ୍ଦୀ ଚିତା କାଟିଛି । ବୁଢ଼ିଟା ପିଲଦିନୁ ଆଇଁସ ଡ଼ାହାଣୀ । ମାଛ ଶୁଖୁଆ ନ ମିଳିଲେ କାଉ ଗୁଡ଼ାକ ଖରପୋଡ଼ା କରି ଭାତ ଖାଇବ । ସେ ମହା ଚାଲାକ୍, ବୁଢ଼ା ଡ଼ାଳେ ଡ଼ାଳେ ଗଲେ ସେ ପତ୍ରେ ପତ୍ରେ ଯାଏ । ଚୁଲି କାଳି ଦେଇ ତାଂପଡ଼ା ଶୁଖୁଆ ମୁଠାଏ ଲୁଚେଇ ରଖିଥାଏ । ଯେମିତି ବୁଢ଼ା ଖାଇ ପିଇ ଶୋଇ ପଡ଼େ ବୁଢ଼ୀ ଉସୁମ ପାଉଁଶରେ ଶୁଖୁଆ ଦଇଠା ଗୋଳେଇ ଦେଇ ଭାତ ଖାଇ ବସେ ।

ସେଦିନ ବୁଢ଼ା, ପଧାନଙ୍କ ଘରୁ ନାକଯାଏ ପିଠାଲି ପନସ କୋଳି ଗୁଡ଼ାଏ ଖାଇ ଆସିଥିବାରୁ ପେଟଟା କଖାରୁ ପରି ଫୁଲେଇ ଦେଇ ଥାଏ । ଥେଣ୍ଟିଆ କୁମ୍ଭୀର ପରି ବଛଣାରେ ଗଡ଼େଇ ହେଉଥାଏ । ବୁଢ଼ା ଶୋଇ ପଡ଼ିଲାଣି ଭାବି ବୁଢ଼ି ଶୁଖୁଆ ପୁଞ୍ଜାଏ ପାଉଁଶରେ ପକେଇ ଦେଲା ପାଉଁଶ ତଳେ ନିଆଁ ଥିଲା । ହଠାତ୍ ଶୁଖୁଆ ପୋଡ଼ା ବାସନା ପବନରେ ଖେଳିଗଲା । ବୁଢ଼ା ହୁଁ ହୁଁ ହୋଇ ବେହେ ଶୁଙ୍ଘିନେଲା । କୁଆଡ଼ୁ ଏ ଗନ୍ଧ ଆସିଲା । ପଡ଼ଶା ଘରତ ଶୋଇଲେଣି । ବୁଢ଼ା ଏଣିକି ତେଣିକି ଚାହିଁ ଉଠିଲା । ଏଁ, ଏ ବାସନା ତା ଘରୁ ଆସୁଛି । ବୁଢ଼ା ପାଦ ଚିପି ଚିପି ଗଲା । ଦେଖିଲା ବେଳକୁ ବୁଢ଼ୀ ପିଢ଼ା ଖଣ୍ଡିକ ଉପରେ ଗୋଡ଼ ଲମ୍ବେଇ ଚୁଲି ମୁଣ୍ଡେ ବସି ବେଲରେ ବେଲାଏ ପଖାଳ, ପଥୁରି ଥାଳିଆରେ ତାଂପଡ଼ା ଶୁଖୁଆ ପୁଞ୍ଜାଏ କଞ୍ଚା ଲଙ୍କା ଯୋଡ଼ାଏ, ରସୁଣ ଦୁଇ

କନ୍ଦା, ଅଣ୍ଟ ପିଆଜରୁ ଫାଳେ ଧର ଚେପି ଯାଉଛି । ଶଳା ବଟେଇ ଚେତେବ ମତି ଅଖି ବୁଜି ଦୁଧ ପିଇ ଯାଉଛି ଆଜି ଧରା ପଡ଼ିଛି ଶିବ କୁଆଡ଼େ ? ଧନ ଗୁଜୁଳ ବାକ ଭିତି ଶୁଖୁଆ କେତେ ଖାଉଥିବ । ଅଜାଙ୍କ ମୁଣ୍ଡକୁ ପିତ୍ତ ଉଠିଗଲା କାଠ ଫାଳିଆଟାଏ ଧର ପଛଆଡ଼ୁ ପିଠିରେ ଦୁମ୍ କରି ପାହାରେ ଦେଲେ । ଘିଁଅ୍ ଘାଉ କରି ଆଣ୍ଟ ଚମକି ପଡ଼ିଲା । ପାଟିରେ ପାଟିଏ ଭାତ ଧର ଚଳି ଆଡ଼କୁ ଗୁହାଁଲ ବେଳକୁ ରାବଣାସୁର ପରି ଅଜା ଆଖି ତରାଟି କାଠଫାଳିଆ ଧର ଠିଆ ହୋଇଛନ୍ତି । ତରତର କରି ପାଟିରୁ ଭାତ ଗୁଡ଼ାକ ଅଜା ମୁହଁକୁ ଫୁଃକରି ଥୁକଦେଇ ଆରେଲୋ ବୋପାଲେ ବୋଲି ରଡ଼ିଟାଏ ପକେଇ ଖଣ୍ଡିଆ ବୁଢା ମତେ ମାରି ପକାଇଲା ଲୋ ମା," କହି କହି କାନ୍ଦ କାନ୍ଧ ବାଡ଼ପଟେ ଥିବା ବାପ ଘରେ ହାଜର । ଭାଇ ଜଗୁ ସିଂହ ଭଉଣୀର କାନ୍ଦଣା ଶୁଣି ସିଂହ ପରି ଗର୍ଜି ଉଠିଲେ । ଶଳା ମୋ ଭଉଣୀ ଦେହରେ ହାତ ଦେଇଛି ତାକୁ ଯଦି କଟକ କଲେକ୍ଟରର ନାଲିକୋଠା ନଦେଖେଇଛି ମୋ ନାଁ ଜଗୁ ସିଂ ନୁହେଁ ହଗୁସି ।

ପାଟେଣି ଏତେ ଟେଙ୍ଗ ଅଜା ଏତିକ ଶୁଣିଲା ମାତ୍ରେ ପିତ୍ତଳନ୍ହ ପାଣି ! ଠିଆ ଠିଆ ଦୂର ହୋଇଗଲା । ନାଇଁ ନାଇଁ ସତରେ ଯଦି ସେ ଟିଙ୍ଗା ଶଳା ମାମଲା ହାଙ୍କିଦେବ ମହରଜଗରୁ ଯାଇ କାନ୍ତାରରେ ପଡ଼ିବା କଥା । ଶୁଖୁଆ ଟେଙ୍କ ଦଟଙ୍କାକୁ ଲୋଭ କରୁ କରୁ ମାମଲାରେ ହଜାର ହଜାର ଟଙ୍କା ବରବାଦ ହୋଇଯିବ । ନା, କାଲି ରାତି ପାହୁ ସେ ଯାଇ ଜଗୁସିଂର ଗୋଡ଼ ହାତ ଧରି ଦୋଷ ମାଗିନେବେ ।

ତା' ଆରଦିନ କୁଆ କା' ନକରୁଣୁ ଟେଙ୍ଗ ଅଜା ଶଶୁର ଘରେ ହାଜର । ଶଳା ଗୋଡ଼ତଳେ ଧଡ଼ାସ୍ କରି ପଡ଼ିଯାଇ ଦୋଷ ମାଗିଗଲେ । କିନ୍ତୁ ସିଂହବଂଶ ନଟୁଣ୍ଡ଼ ବନ୍ଧା । ଆଜି ଏଇଠି ଗାଧୁଆ ପାଧୁଆ କରି ମାଛ ଭାତ ଖାଅ ତେବେ ଯାଇ ଭଉଣୀ ତୁମ ଘରକୁ ଯିବ । ଅଜା ଆଉ କଣ କରିବେ । ନାକ କାନ ମୋଡ଼ି ହୋଇ ବେକରୁ ତୁଳସୀ-ମାଳି ଛିଣ୍ଡେଇ କପାଳରୁ ରାମାନନ୍ଦୀ ଚିତା ଲିଭେଇ ଗାଧୁଆ ପାଧୁଆ କରି ନଧୁମ ଟେଙ୍ଗ ଆମ୍ବିଳ ସାଙ୍ଗକୁ ଗରମ ଭାତ ହାଙ୍କି ନେଲେ । ବୁଢ଼ୀକୁ ସାଙ୍ଗରେ ଧରି ଘରକୁ ଫେରିଲେ । ●

---

(କୁଆଁତାରା ପତ୍ରିକାର ୧୯୭୮ ମସିହାରେ ମାର୍ଚ୍ଚ ଓ ଏପ୍ରିଲ ମାସରେ ପ୍ରକାଶିତ)

# ଠେଙ୍ଗୁ ଅଜାଙ୍କ ଠେଙ୍ଗୁଣିଆ

ଠେଙ୍ଗୁ ଅଜାଙ୍କ ଘରଣୀ ବେର୍ଙ୍କି ଆଈ ସେଦିନ ଶୁଖୁଆ ଦଶଟା ପାଇଁ ମାଡଖାଇ ରଗିକରି ବାପ ଘରକୁ ପଳେଇଲେ । ଏତେ ଦାନ୍ତ ମଳାଖିଆ ବୁଢ଼ାଟା, ମାନ୍ଧ ମାଉଁସରେ ପଇସା ଖର୍ଚ୍ଚ ହୋଇଯିବ ବୋଲି ବୁଢ଼ିକୁ ଜବରଦସ୍ତ ଦୀକ୍ଷା ନେବାକୁ ବାଧ କରେଇଛି । ଅଜ ନାକ ମଧ୍ୟ ଆଇଁସ ଛାଡ ବେକରେ ତୁଳସୀମାଳା ମୁଣ୍ଡରେ ରାମାନନ୍ଦୀ ଟୋପା କାଟିଛି । ବୁଢ଼ିଟା ପିଲାଦିନୁ ଆଇଁସ ଡାହାଣୀ । ମାତ୍ର ଶୁଖୁଆ ନ ମିଳିଲେ କାଳି ଗୁଡ଼ାକ ଖରପୋଡ଼ା କରି ଭାତ ଖାଇବ । ସେ ମହା ଗୃହଲକ୍ଷ୍ମୀ, ବୁଢ଼ା ଡାଳେ ଡାଳେ ଗଲେ ସେ ପତ୍ରେ ପତ୍ରେ ଯାଏ । ଗୃହେଲ କାଲି ଦେଇ ଚାଂପଡ଼ା ଶୁଖୁଆ ମୁଠାଏ ଲୁଚେଇ ରଖିଥାଏ । ଯେମିତି ବୁଢ଼ା ଖାଇ ପିଇ ଶୋଇ ପଡ଼େ ବୁଢ଼ୀ ଉସୁମୁ ପାଉଁଶରେ ଶୁଖୁଆ ଦଶଟା ଗୋଳେଇ ଦେଇ ଭାତ ଖାଇ ବସେ ।

ସେଦିନ ବୁଢ଼ା, ପଧାନଙ୍କ ଘରୁ ନାକଯାଏ ପାଚିଲା ପଣସ କୋଲି ଗୁଡ଼ାଏ ଖାଇ ଆସିଥିବାରୁ ପେଟଟା କଖାରୁ ପରି ଫୁଲେଇ ଦେଇଥାଏ । ଥେଣ୍ଟିଆ କୁମ୍ଭୀର ପରି ବଛଣାରେ ଗଡ଼େଇ ହେଉଥାଏ । ବୁଢ଼ା ଶୋଇ ପଡ଼ିଲାଣି ଭାବି ବୁଢ଼ି ଶୁଖୁଆ ପୁଞ୍ଜାଏ ପାଉଁଶରେ ପକେଇ ଦେଲା ପାଉଁଶ ତଳେ ନିଆଁ ଥିଲା । ହଠାତ୍ ଶୁଖୁଆ ପୋଡ଼ା ବାସନା ପବନ-ରେ ଘେନିଗଲା । ବୁଢ଼ା ସୁଁ ସୁଁ ହୋଇ ବହେ ଶୁଙ୍ଘିନେଲା କୁଆଡୁ ଏ ଗନ୍ଧ ଆଇଲା । ପଡ଼ଶା ଘରେତ ଶୋଇଲେଣି । ବୁଢ଼ା ଏଣିକି ତେଣିକି ଚାହିଁ ଉଠିଲା । ଏଁ, ଏ ବାସନା ତା ଘରୁ ଆସୁଛି । ବୁଢ଼ା ପାଦ ଚାପି ଚାପି ଗଲା । ଦେଖିଲା ବେଳକୁ ବୁଢ଼ୀ ପିଢ଼ା ଖଣ୍ଡକ ଉପରେ ଗୋଡ଼ ଲମ୍ବେଇ ଚୁଲି ମୁଣ୍ଡେ ବସି ବେଲରେ ବେଲାଏ ପଖାଳ, ପଥୁରି ଥାଳି-ଆରେ ଚାଂପଡ଼ା ଶୁଖୁଆ ପୁଞ୍ଜାଏ କଞ୍ଚା ଲଙ୍କା ଯୋଡ଼ାଏ, ରସୁଣ ଦୁଇ

କନ୍ଧା, ଅଧା ପିଆଜରୁ ଫାଳେ ଧରି ନେଇଗଲି ଯାଉଛି । ଶଳା ବଲେଇ ଟେଟେବ ପ୍ରେତ ଅଖି ବୁଜି ଦୁଧ ପିଇ ଯାଉଛି ଆଜ ଧରା ପଡ଼ିଛି ଯିବ କୁଆଡ଼େ ? ଧନ ଗୁଣ୍ଡଳ ବାକ ବଞ୍ଚି ଶୁଖୁଆ କେତେ ଖାଉଥିବ । ଅଜାଙ୍କ ମୁଣ୍ଡକୁ ପିତ୍ତ ଉଠିଗଲା କାଠ ଫାଳିଆଟାଏ ଧରି ପଛଆଡ଼ୁ ପିଠିରେ ଦୁମ୍ କରି ପାହାରେ ଦେଲେ । ଘିଉଁ ଘାଡ କରି ଆଣ୍ଠେ ମେଞ୍ଚ ପଡ଼ିଲା । ପାଟିରେ ପାଟିଏ ଭାତ ଧରି ଅଛି ଆଡ଼କୁ ଗୁହାଁଲା ବେଳକୁ ରାବଣାସୁର ପରି ଅଜା ଆଖି ତରାଟି କାଠଫାଳିଆ ଧରି ଠିଆ ହୋଇଛନ୍ତି । ତରତର କରି ପାଟିରୁ ଭାତ ଗୁଣ୍ଡାକ ଅଜା ମୁହଁକୁ ଫୁଃକରି ଥୁକିଦେଇ ଅନେଇ ତୋପାଲେ ବୋଲି ରଡ଼ିଟାଏ ପକେଇ ଖଣ୍ଡିଆ ବୁଢା ମତେ ମାରି ପକାଇଲା ଲୋ ମା," କହି କହି କାନ୍ଦି କାନ୍ଦି ବାଡପଟିଠି ଥିବା ବାପ ଘରେ ହାଜର । ଭାଇ ଜଗୁ ସିଂହ ଭଉଣୀର କାନ୍ଦଣା ଶୁଣି ସିଂହ ପରି ଗର୍ଜି ଉଠିଲେ । ଶଳା ମୋ ଭଉଣୀ ଦେହରେ ହାତ ଦେଇଛି ତାକୁ ଯଦି କଟକ କାଲେକ୍ଟର ନାଲିକୋଠା ନଦେଖେଇଛି ମୋ ନାଁ ଜଗୁ ସିଂ ନୁହେଁ ହଗୁସିଂ ।

ପାଠକେ ଏପଟେ ଟେଙ୍ଗ୍ ଅଜା ଏତକ ଶୁଣିଲା ମାତ୍ରେ ପିତ୍ତଳହି ପାଣି ! ଠିଆ ଠିଆ ଦୁଜ ହୋଇଗଲା । ନାଇଁ ନାଇଁ ସତରେ ଯଦି ସେ ଟିଙ୍ଗା ଶଳା ମାମଲା ହାଙ୍କିଦେବ ମହକଗରୁ ଯାଇ କାନ୍ଥାରରେ ପଡ଼ିବା କଥା । ଶୁଖୁଆ ଠେଙ୍ଗ ବିଠିଙ୍କାକୁ ଲୋଭ କରୁ କରୁ ମାମଲାରେ ହଜାର ହଜାର ଟଙ୍କା ବରବାଦ ହୋଇଯିବ । ନା, କାଲି ରାତି ପାହୁ ସେ ଯାଇ ଜଗୁସିଂର ଗୋଡ଼ ହାତ ଧରି ଦୋଷ ମାନିନେବେ ।

ତା' ଆରଦିନ କୁଆ କା' ନକରୁଣୁ ଟେଙ୍ଗ୍ ଅଜା ଶଶୁର ଘରେ ହାଜର । ଶଳା ଗୋଡତଳେ ଧଡ଼ାସ୍ କରି ପଡ଼ିଯାଇ ଦୋଷ ମାନିଗଲେ । କିନ୍ତୁ ସିଂହବଂଶ ନଟ୍ଟୁଡ଼ି ବନ୍ଧା । ଆଜି ଏଇଠି ଗାଧୁଆ ପାଧୁଆ କରି ମାଛ ଭାତ ଖାଅ ତେବେ ଯାଇ ଭଉଣୀ ତୁମ ଘରକୁ ଯିବ । ଅଜା ଆଉ କଣ କରିବେ । ନାକ କାନ ମୋଡି ହୋଇ ବେକରୁ ତୁଳସୀ-ମାଳୀ ଛିଣ୍ଡେଇ କପାଳରୁ ରାମାନନ୍ଦୀ ଚିତା ଲିଭେଇ ଗାଧୁଆ ପାଧୁଆ କରି ନିର୍ଧୁମ ଟେଙ୍ଗ ଆମ୍ବିଳ ସାଙ୍ଗକୁ ଗରମ ଭାତ ହାଙ୍କି ନେଲେ । ବୁଢ଼ୀକୁ ସାଙ୍ଗରେ ଧରି ଘରକୁ ଫେରିଲେ ।

(କୁଆଁତାରା ପତ୍ରିକାର ୧୯୭୮ ମସିହାରେ ମାର୍ଚ୍ଚ ଓ ଏପ୍ରିଲ ମାସରେ ପ୍ରକାଶିତ)

# ଆଇଙ୍କ ଏକାଦଶୀ

ରାତି ଜାଙ୍କୁଲୁ ଜାଙ୍କୁଲୁ ମାଡ଼ି ଆସୁଛି । ଖିରାଦିନର ପରିଶ୍ରମ ପରେ ସବୁଆଡ଼େ ନିଦଟା ଲାଗି ଯାଇଥିଲା । ଅଜା ସପନରେ ଯାଇ ଇନ୍ଦ୍ର ପୁରୀରେ ହାଜର । ଇନ୍ଦ୍ର ରଜା ପୁଅର ଏକୋଇଶିଆ ଉତ୍ସବ । ସବୁଆଡ଼େ ଆନନ୍ଦ କୋଳାହଳରେ ଫାଟି ପଡ଼ୁଛି । ଖାଇବା ଜିନିଷ ବାସନାରେ ସବୁଆଡ଼େ ମହମହ ଚହଚହ । ପାଟିରୁ ନାଳ ଗଡ଼ି ପଡ଼ୁଛି । ଧାଡ଼ି ଧାଡ଼ି ପତର ପଡ଼ିଯାଇଛି ଲୋକ-ମାନେ ବସିଗଲେଣି । ଅଜା ଯାଇ ସେମାନଙ୍କ ଭିତରେ ବସିଗଲେ । ପରଶୁଣୀ ହାଣ୍ଡି ହାଣ୍ଡି ଖିରି, ପୁରି, ରସଗୋଲା ପରସି ଚାଲିଛନ୍ତି । ବାପ୍‌ରେ ଗୋଲପ ଜାମୁ ଗୁଡ଼ାକ ଠିକ୍ ଗୋଟିଏ ଟିକିପୁଆ ପରି ସେମିତି ଆମ କଣ୍ଟକ ବାଲି ସାହାରେ ମିଳେ । ଅଜା ସମ୍ଭାଳି ନପାରି ତରତରରେ ହୋଇ ଗୋଲପଜାମୁଟାଏ ପାଟିକି ନେଉଥିଲେ ହଠାତ୍ ଗୋଟାଏ କଳ-କଳା ରଡ଼ରେ ଅଜାଙ୍କ ମଧୁରିଆ ସପନଟା ଭାଙ୍ଗିଗଲା । ଆଖି ମେଲାଇ ଚାହିଁଲା ବେଳକୁ ସାମନାରେ ପୁତନା ଅସୁରୀ ପରି ଆଈ ଠିଆ ହୋଇ ରଡ଼ି କରି କହୁଛନ୍ତି' ମଲା କି 'ଅଲେକ୍ଷଣିଆ' ମଣିଷ ଟାଏ ! ଦିନ ଆସି ପହରେ ହେଲାଣି । ଆଜିର ନିଦ ଭାଙ୍ଗୁନି" । ଅଜାଙ୍କ ଦେହରେ ନିଆଁ ଚରିଗଲା । କି ବଜାରୁ ମାଇକିନାଟା ସବୁ ମାଟି କରିଦେଲା । ଆଉଟିକିଏ ସମ୍ଭାଳି ପାରିଲାନି, ଭୋଜନଟା ହେଲେ ସିଏ ଖାଇ ସାରିଥାଆନ୍ତେ । ଓଃ ..

ଆଈ ପୁଣି ବିରକ୍ତ ହୋଇ କହିଲେ, "କଉ, ତମେ ସରା ହାଟକୁ ଯିବ । ଆଜି ବଡ଼ ଏକାଦଶୀ, ମୋର ଉପାସ । ତମେ ଟିକିଏ ବେଗେ ହାଟକୁ ଯାଇ ଫଳ ମୂଳ ଦୁଇଟା ଆଣିଲେ ପୂଜା ହେବ । ମୁଁ ପ୍ରସାଦ ପାଇବି, କର୍ମୀରଟା ପରି ସେମିତି ଅଜା ଗରଗର ହୋଇ ଉଠିଲେ । ମୁହଁ ହାତ ଧୋଇ ସାରିଲା ବେଳକୁ ଆଈ ଟଙ୍କା ପାଞ୍ଚଟା ଓ କନା ବ୍ୟାଗ ଗୋଟାଏ ଧରାଇ ଦେଲେ । ତା ସଙ୍ଗେ ସଙ୍ଗେ ଫର୍ଦ୍ଦ ଧଳା କାଗଜରେ

ଲମ୍ବା ଚଉଡ଼ା ଲିଷ୍ଟ ଟାଏ ଦେଇ କହିଲେ ବେଗି ବାହାର ପଡ଼ । ଖରା ମାଡ଼ି ଆସୁଛି । ସଅଳ ଆସିଲେ ଗାଧୁଆ ପାଧୁଆ ସାରି ପୂଜା କରିବ ।

ଅଜା କାନ ମୁଣ୍ଡ ଆଉଁସି ଗୋଟିଏ ଗୋଟିଏ ହାଟକୁ ଗଲେ । ବାଟରେ ଡାଲିକା ଉପରେ ରଖି ବୁଲେଇ ଅଣିଲେ । ଶଳା ! କଙ୍କୁଣି କାହାଁକା, ସମାନ ଗଣ୍ଡିକର ପଇସା ଦେଇଛି, ଗୋଟେ ନଆ ପଇସା ବି ଏପଟ ସେପଟ କଲେ ବଳିବନି । ହାଟକଥା କୋଉଟା ବଢିଥିବ, କୋଉଟା କମିଥିବ । ଗୁଡ଼...ବାଟରେ ଗଲେ ପଧାନ ତୋଟାଟା ପଡ଼େ। ତୋଟା ପାଖାପାଖି ହେଲାବେଳକୁ ଅଜାଙ୍କ ଦୃଷ୍ଟି ତୋଟା ଭିତରେଥିବା ଆମ୍ବଗଛ ଉପରେ ଲାଖିଗଲା, ଓଃ କି ସୁନ୍ଦର ହଳଦୀ ଗୁରୁଗୁରୁ ଆମ୍ବ ଗୁଡ଼ା ଝୁଲୁଛି...ନେବେ କି ଦୁଇଟା...ବୋପାଲୋ.. ଗଛ ମୂଳେ କିଏ ଗୋଟାଏ ବସି ଜଗିଛି ଥାଉ....ଯଦି ସୁବିଧା ହେବ ଆସିଲା ବେଳେ ନେବେ । ହାଟରେ ପନ୍ଦର କଣା ସାରିଲା ବେଳକୁ ୧୦ଟା ବାଜି ଗଲାଣି ଖାଲି ଆଉ ଆମ୍ବ କିଣି ନାହାନ୍ତି । ଭୋକରେ ପେଟରୁ ଅଜାଙ୍କ ହଂସା ଉଡ଼ି ଗଲାଣି । ଅଜା ମନେ ମନେ ଗୋଟାଏ ଉପାୟ ଭାବିନେଲେ । ଏଇ ଆମ୍ବ ପଇସାରେ ଜଳଖିଆ କିଣି ଖାଇନେବେ ବାଟରୁ ପଧାନ ତୋଟାରୁ ଆମ୍ବ ତୋଳିନେବେ । ବୁଢ଼ୀଟା ଜମା ଜାଣି ପାରିବନି ।

ଅଜା ଗରମ ଗରମ ପକୁଡ଼ି ଠୁଙ୍ଗାଏ କିଣି ଦୋକାନର ଦାଦର ବେଞ୍ଚ ଉପରେ ବସି ପାଟିକି ନେଉ ନେଉ ମନେ ପଡ଼ିଲା ଆରେ-- ହେତ ଦାନ୍ତ ଘଷି ନାହାନ୍ତି । ଦୁଃ କଣ ହେଲା ସେଇଟା, ପିଲାଦିନେ କୋଉ ବହିରେ ଗୋଟାଏ ପଢ଼ିଥିଲେ ଗୋଟାଏ ଦେଶରେ ଲୋକେ ମୋଟେ ଦାନ୍ତ ଘଷନ୍ତି ନାହିଁ, ସେମାନେ ତ ମଣିଷ । ଅଜା ଟେରେଇ ହୋଇ ପକୁଡ଼ି ଦୁଇଟା ପାଟିକି ପକାଇବାକୁ ଯାଉଛନ୍ତି, ଶୁଭିଲା ଓଳିକି ଗୋଟେ ସ୍ୱର । ଆପଣ ଏଠି, ମୁଁ ହାଟ ସାରା ଖୋଜି ଆସିଲିଣି ।

ଅଜା ମନେ ମନେ ତା ବାପର ଚଉଦ ପୁରୁଷ ଶ୍ରାଦ୍ଧ କରି ମୁହଁ ଟେକି ଚାହିଁଲେ, 'କିରେ ଚନ୍ଦରା, କିରେ କୁଆଡ଼େ ଆସିଲୁ ?' "ଆଜ୍ଞା । ମା ସାଆନ୍ତାଣୀ ପରା ଆପଣଙ୍କ ଯିବାରେ ଡେରି ଦେଖି ମତେ

ପଠାଇଲେ । ଆପଣ ସକାଳୁ ଅଧିଆ ମୁହଁରେ ଆସିଛନ୍ତି । ଦାନ୍ତ ଘଷି ନାହାନ୍ତି କି ଗାଧୋଇ ନାହାନ୍ତି । ମା ଭାରି ବ୍ୟସ୍ତ ହେଉଛନ୍ତି । ଗୃହଲବା ହେଉନ୍ତୁ । ଚେଣେ ମା ଉପାସ କରିକରି ବସିଛନ୍ତି, "ଅଜା ତରତର ହୋଇ ପକୁଡ ଠୁଙ୍ଗାଟା ଗାମୁଛା କାନିରେ ଗଣ୍ଠିଲେ ଦେଇ ଫଳ ବ୍ୟାଗଟା ଚନ୍ଦରକୁ ଧରେଇ ଦେଇ ଗୃହଲେ । ମନ ତାଙ୍କର ଖାଲି ସାନ୍ତ୍ରୁ ଖାଇଲା ପରି ହେଉଥାଏ । ଓହୋ କି ଦୁର୍ଯୋଗ, ଖାଇବା ଜିନିଷ ଭୁଣ୍ଡିରୁ ଫେରି ଆସୁଛି ।

କିଛି ବାଟ ଗଲାପରେ ଅଜା କଅଁଳେଇ ସଅଁଳେଇ କହିଲେ, "ଆରେ ବାପ ଚନ୍ଦୁ ! ତୁ ଆମର ଆଗରେ ଯା ମୁଁ ଏଇ ନଈ ବନ୍ଧ କଡ଼ରେ ପୋଖରୀ ପାଣି ବସି ଯାଉଛି ପେଟଟା କାହିଁକି ମୋଡ଼ି ଦେଲାଣି, କହି କହି ଅଜା ନଈ ବନ୍ଧ ଆଡ଼େ ମୋହିଁଲେ । କାଚୁଟିଆ ଦେଖି ଗାମୁଛା କାନ ଦବାଣ୍ଡିଲା ବେଳକୁ କିଛି ନାହିଁ । କେତେବେଳେ ଫିଟିଯାଇ ପକୁଡ଼ି-ତକ ଖସିପଡ଼ିଛି ଖାଲି ଠୁଙ୍ଗାଟି ବନ୍ଧା ହୋଇଛି । ଭୋକରେ ପେଟ କଁ କଁ ଡାକିଲାଣି । ଏଣେ ଖରା ମାଡ଼ି ଆସିଲାଣି । ପୁଣି ଆମ୍ବ ନନେଲେ ବୁଢ଼ୀ ରାଗ ଶୁଣି କଣ୍ଟା ଖାଇଯିବ । କଣ କରିବେ, କାନମୁଣ୍ଡା ! ଆଉଁସି ପଧାନ ତୋଟାଆଡ଼େ ଗୃହଲେ ।

ଯା ହେଉ ତୋଟା ଭିତରେ କେହି କୁଆଡ଼େ ନାହିଁ । ଏସୁଯୋଗ ଛାଡ଼ିବାର ନୁହେଁ । ଏଣିକି ତେଣିକି ଚାହିଁ ଗୃହାଣିଚେ ମାରି ଅଜା ଗୋଟିଏ ଆମ୍ବଗଛ ଉପରେ ଚଢ଼ିଗଲେ । କଣ କରିବେ ହାତ ପାଉନ ଯୋଉ ସୁନ୍ଦର ପେନ୍ଥା ପେନ୍ଥା ହୋଇ ହଳଦୀ ଗୁ ରଙ୍ଗ ରୁ ପାଚିଲା ଆମ୍ବ ଗୁଡ଼ା ଝୁଲୁଛି ପାଟିରୁ ନାଳ ବୋହି ପଡ଼ୁଛି । ଅଜା ଆଉ ଟିକିଏ ଚଢ଼ି-ଗଲେ । ଏଥର ଅଗ ଟିପରେ ଭରଦେଇ ହାତ ବଢ଼ାଇଲେ···ବାସ୍ ପାଇଗଲା···ଆଉ ଟିକିଏ···ହଠାତ୍ ଶୁଭିଲା କାଏ·· କରେ—ଅଳପା ଇଷିଆ—ଗଛଉପରେ—ରହରହ ଯାଉଛି । ଅଜା ଉପରେ ଗୋଟାଗୁଏଁ ଅଣ ଅଣି ଗଛ ଉପରୁ ଦୁମ କରି ତଳେ ପଡ଼ିଗଲେ । ଯେତେବେଳେ ଚେତା ଆସିଲା ଅଜା ଦେଖିଲେ ତାଙ୍କ ସ୍ୱରପଟରେ ଲୋକ ଗଦା ପଧାନ ବୁଢ଼ା ତାଙ୍କ ମୁହଁରେ ପାଣି ଛାଟୁଛି ତାଙ୍କୁ ଚେତା ହେବାର ଦେଖି ବ୍ୟସ୍ତ ହୋଇ କହିଲା, 'ଖବର ଦେଇଥିଲେ ମୁଁ ପଠେଣ ଆମ୍ବ

ପଠାଇ ଦେଇଥାନ୍ତି । ଆପଣ ଗୋଟେଇ ଗନ୍ଧରେ ଚଢ଼ି କଅାଁ ଏତେ କଷ୍ଟ ପାଇଲ । ଲୁଗା ଖଣ୍ଡକ ବ ଶର ଫାଳ ଫାଳ ହୋଇଯାଇଛି ।

ଅଜା ଲଜରେ ଗୋଟାପୁଧା ସଢ଼ି ଗଲେଣି । ବହୁତ କଷ୍ଟରେ କୁନ୍ଥେଇ କୁନ୍ଥେଇ କହିଲେ, 'ଆଜ ବୁଢ଼ିଟା ଏକାଦଶୀ କରିଛି ପୂଜା ପାଇଁ ହାତରେ ଆମ୍ବ ଖୋଜ ଖୋଜ ପାଇଲିନ । ଏଇବାଟେ ଯାଉଥିଲି, ଦେଖିଲି ଯେମିତି ଭାବିଲି ପୂଜା କଥାତ; ଗୋଟାଏ ନେଇଯାଏଁ । ନାତି ଲେଖା ପଢ଼ା କହିଲା, କଉ ଅଜା ! ତମ ଜାତିରେ ପରା ସ୍ୱାମୀ ମଲେ ସ୍ତ୍ରୀ ଏକାଦଶୀ କରେ—ତମେତ ବଞ୍ଚିଛ, ଆଈ କଣ ଏକାଦଶୀ କରୁଛି । ଚମକି ପଡ଼ିଲେ ମିଛୁ ଅଜା ଏଁ, ସତେତ —ରଣ୍ଡି ବୁଢ଼ୀ ଟେଟେ ମୋ ମରିବା ଗୁହାଁଛି ଆଜ ଠିକ୍ କରି ଦେଉଛି । ଅଜା କ୍ରୋଧ ଅପମାନ ଯନ୍ତ୍ରଣାରେ ଏକାକାର ହୋଇ ଚିରା ଲୁଗାକୁ ହାତରେ ମୁଠେଇ ଧରି ଅଜା ଗ୍ରୁଣ୍ଟେଇ ଗ୍ରୁଣ୍ଟେଇ ଘରଆଡ଼େ ଏକ ମୁହାଁ ହୋଇ ଦୌଡ଼ିଲେ । ପଛରୁ ଚଗଲା ଟୋକା ଗୁଡ଼ାଙ୍କର ହୋ-ହୋ-ହସ କାନରେ ଶୁଭୁଥାଏ ।



(ଜହ୍ନରାଇଜ ପତ୍ରିକାର ୧୯୭୯ ମସିହା ଜାନୁଆରୀ ମାସରେ ପ୍ରକାଶିତ)

# ଶିବଙ୍କ ଛଟିଛଟା

## (ଶିବ ପୁରାଣରୁ)

ଥରେ ପୃଥିବୀରେ ବହୁତ ଦିନ ଧରି ବର୍ଷା ନ ହେବାରୁ ଘୋର ଦୁର୍ଭିକ୍ଷ ପଡ଼ିଲା । ବ୍ରହ୍ମା ସଂସାରକୁ ସୁଧାରିବା ପାଇଁ ମନୁ ବଂଶର 'ରିପୁଞ୍ଜୟ'ଙ୍କ ପାଖକୁ ଯାଇ କହିଲେ—ବତ୍ସ, ତୁମେ ଯାଇ ପୃଥିବୀ ପାଳନ କର । ତୁମ ଭଳି ବୀର, ମହତ୍ତ୍ୱପୂର୍ଣ୍ଣ ଉଦାର ଧାର୍ମିକ ବ୍ୟକ୍ତି ହିଁ ସଂସାର ପାଳିବା ପାଇଁ ଉପଯୁକ୍ତ ।

ଏହା ଶୁଣି ରିପୁଞ୍ଜୟ କହିଲେ—"ପିତାମହ, ଯଦି ଆପଣ ମୋତେ ଗୋଟିଏ ବର ଦେବେ ତେବେ ମୁଁ ଏ ଭାର ଗ୍ରହଣ କରିବି । ତାହା ହେଉଛି ପୃଥିବୀ ଉପରେ ଦେବତା ଓ ପାତାଳ ବାସୀମାନେ ରହିବେନି । ବ୍ରହ୍ମା ରାଜି ହୋଇ 'ରିପୁଞ୍ଜୟ'ଙ୍କୁ ପୃଥିବୀରେ ଅଭିଷେକ କରି ନିଜ ଲୋକକୁ ଫେରିଗଲେ । ରିପୁଞ୍ଜୟ ରାଜା ହେବାମାତ୍ରେ ରାଜ୍ୟରେ ଡେଙ୍ଗୁରା ପିଟାଇଲେ ଯେ ପୃଥିବୀ ଉପରେ କେହି ଦେବତା କିମ୍ବା ପାତାଳବାସୀ ରହି ପାରିବେନି ।

ଏଇ ଡେଙ୍ଗୁରା ଶୁଣି ପୃଥିବୀରେ ଥିବା ଦେବଗଣ କାଶୀ ବିଶ୍ୱନାଥଙ୍କ ପାଖକୁ ଯାଇ ଏ ସମସ୍ତ ବିଷୟ ଜଣାଇଲେ । ଶିବ ଯେତେବେଳେ ଜାଣିଲେ ବ୍ରହ୍ମା ଏମିତି ବର ରିପୁଞ୍ଜୟଙ୍କୁ ଦେଇଛନ୍ତି ସେ ଦେବତାମାନଙ୍କୁ ଧରି ମନ୍ଦର ପର୍ବତକୁ ଗଲେ ।

ରିପୁଞ୍ଜୟ ନିଜ ରାଜଧାନୀ କାଶୀରେ ସ୍ଥାପନ କଲେ । ମହାସୁଖରେ ପ୍ରଜାମାନେ ରହିଲେ । ଏଣେ ଦେବତା ମାନେ ଆଶ୍ରୟହୀନ ହୋଇ ନିଜଗୁରୁ ବୃହସ୍ପତିଙ୍କୁ ସବୁ ଦୁଃଖ ଜଣାଇଲେ । ବୃହସ୍ପତି ସେମାନଙ୍କୁ ଉପାୟ ବତାଇଲେ, ଅଗ୍ନି, ବାୟୁ, ବରୁଣଙ୍କୁ ଅନୁରୋଧ କର ସେମାନେ ପୃଥିବୀ ସହିତ ସହଯୋଗ ନକରନ୍ତୁ । ଅଗ୍ନିଙ୍କୁ ପ୍ରଥମେ ଅନୁରୋଧ କର ସେ ପୃଥିବୀରେ ଜଳିବେନି । ଲୋକେ ରାନ୍ଧି ପାରିବେନି, ଯଜ୍ଞ ମଧ୍ୟ କରି

ପାଇବେନି । ବ୍ରାହ୍ମଣମାନେ ରାଜାଙ୍କୁ ଶାପ ଦେବେ । ଦେବତା ମାନେ ସେଇଆ କଲେ ।

ଦ୍ୱନ୍ଦ୍ୱରେ ଅଗ୍ନି ନ ଜଳିବାରୁ ପ୍ରଜାମାନେ ଆସି ରାଜାଙ୍କୁ ଆଚଭି । କଲେ ରାଜା ସେଇଠୁ ନିଜ ତପସ୍ୟା ବଳରେ ଅଗ୍ନି, ବାୟୁ, ବରୁଣଙ୍କୁ ସନ୍ତୁଷ୍ଟ କରିଦେଲେ । ଦେବତାମାନେ ପୁଣି ଶିବଙ୍କୁ ଖୋସାମଦ କଲେ । ଶିବ ମଧ୍ୟ କାଶୀ ନଦୀ ବଡ଼ ନାରଖାର ହେଉଥିଲେ ।

ଶିବ ସଙ୍ଗେ ସଙ୍ଗେ ଚଉଷଠି ଯୋଗିନୀଗଣଙ୍କୁ ପୃଥିବୀକୁ ପଠାଇଲେ ସେମାନେ ଲୋକମାନଙ୍କୁ କୁପଥ ଗାମୀ କରାଇ ରାଜାଙ୍କର ପତନ ଘଟାଇବାକୁ ଚେଷ୍ଟା କଲେ । କିନ୍ତୁ ଶେଷରେ ରାଜାଙ୍କ ଧର୍ମ ନିକଟରେ ହାର ମାନିବାକୁ ପଡ଼ିଲା । ପୁଣି ଶିବ ସୂର୍ଯ୍ୟଙ୍କୁ ପଠାଇଲେ ତୁମେ ଯାଇ ରାଜାଙ୍କୁ ଧର୍ମଚ୍ୟୁତ କର । ସୂର୍ଯ୍ୟ ବହୁତ ଚେଷ୍ଟା କଲେ କିନ୍ତୁ ବିଫଳ ହେବାରୁ ସେ ମଧ୍ୟ କାଶୀରେ ରହିଗଲେ । ଫେରିଗଲେ ଶିବ ରାଗିବେ ।

ଶିବ ତାପରେ ବ୍ରହ୍ମାଙ୍କୁ ପଠାଇଲେ । ବ୍ରହ୍ମା ବୃଦ୍ଧ ବ୍ରାହ୍ମଣ ବେଶରେ ଯାଇ ରାଜାଙ୍କ ପାଖରେ ପହଞ୍ଚିଲେ । ସେମାନେ ତ ବର ଦେଇ ଛନ୍ତି କେମିତି ଅପଥରେ ନେବେ, କେମିତି ବା କହିବେ ଦେବତାଙ୍କୁ ଆଣ ସେ ସେଇଠି ରହି ଯିବା କଲେ । ଯଦି ଫେରିବେ ଶିବଙ୍କୁ କଣ କହିବେ ।

ଶିବ ଦେଖିଲେ ବ୍ରହ୍ମା ମଧ୍ୟ ଠକିଲେ । ସେଇଠୁ ଗଣେଶଙ୍କୁ ଡାକି ପଠାଇଲେ । ଗଣେଶ ମଧ୍ୟ ସେଠାରେ ପହଞ୍ଚି ଅନେକ ଉପଦ୍ରବ କଲେ । ଲୋକଙ୍କୁ ଜ୍ୟୋତିଷ ବୋଲି ନିଜକୁ ପରିଚୟ ଦେଇ ଦେଶ ବିନାଶ ହୋଇଯିବ ବୋଲି ପ୍ରଚାର କଲେ । ତାପରେ ରାଜାଙ୍କ ମହଲକୁ ଯାଇ ରାଜାଙ୍କ ସବୁ ପ୍ରଶ୍ନର ଉତ୍ତର ଦେଲେ । ରାଜା ଭକ୍ତିରେ ଗଦ୍‌ଗଦ୍ ହୋଇ ତାଙ୍କୁ ରାଜ ପୁରୋହିତ କରି ରଖିଲେ । ଗଣେଶ ମଧ୍ୟ ଦ୍ରବ୍ୟ ଆରାମରେ ରହି ତାଙ୍କ ଅନିଷ୍ଟ କରିବା କଥା ଭୁଲି ଗଲେ ।

ଏହା ପରେ ଶିବ ବ୍ୟସ୍ତ ହୋଇ ବିଷ୍ଣୁଙ୍କ ପାଖକୁ ଗଲେ । ବିଷ୍ଣୁ ତ ସବୁକଥା ଜାଣନ୍ତି ନ ଜାଣିଲା ପରି ଛଳନା କଲେ । ଶିବ ତାଙ୍କୁ କହିଲେ ଦେଖ ତାକୁ ଯଦି ସେଠାରୁ ନ ହଟାଇବ ତୁମେ ମୋର ନିଷ୍ଠପୁ

ଯୁଦ୍ଧ ହେବ, ସୃଷ୍ଟି ଧ୍ୱଂସ ହେବ । ବ୍ରହ୍ମା ତ ଏଆଡ଼େ ବର ଦେଇଛନ୍ତି ପୁଣି ରାଜାତ ବସ୍ତୁ ଭକ୍ତ, ନ୍ୟାୟୀ ଧର୍ମ-ବନ୍ଧୁ କଣ କରିବେ ? ବଡ଼ ଅଡୁଆରେ ପଡ଼ିଲେ । ଗୋଟିଏ ବୃଦ୍ଧ ବ୍ରାହ୍ମଣ ବେଶରେ ରାଜା ପାଖକୁ ଗଲେ । ଭୋକରେ ହଂସା ଉଡ଼ିଗଲା ପରି ଅଭିନୟ କଲେ । ରାଜା ତାଙ୍କୁ ଦେଖି ଖୁବ୍ ଆଦର ଅଭ୍ୟର୍ଥନା କଲେ । ଏବଂ ଭୋଜନର ବ୍ୟବସ୍ଥା କଲେ । ଭୋଜନକୁ ଯିବା ପୂର୍ବରୁ ବ୍ରାହ୍ମଣ କହିଲେ ବାବା, ମୁଁ ଜଣେ ଶିବ ଭକ୍ତ ଲୋକ, ଶିବ ଦର୍ଶନ ନକଲେ ଖାଇବି ନାହିଁ । ମରିଯିବି ପଛକେ ବିନା ଦର୍ଶନରେ ଜଳ ଗ୍ରହଣ କରିବିନି । ରାଜା ମହା ଅଡୁଆରେ ପଡ଼ିଲେ । ତାଙ୍କ ରାଜ୍ୟରେ ତ ଶିବ ମନ୍ଦିର ନାହିଁ, ନହେଲେ ତ ବର ମାଗିଛନ୍ତି କୌଣସି ଦେବା ଦେବୀ ପୃଥିବୀରେ ରହିବେ ନାହିଁ । ଯଦି ଶିବ ଲିଙ୍ଗଟିଏ ପ୍ରତିଷ୍ଠା କରିବେ ନିଜେ ସତ୍ୟଭଗ୍ନ ହେବେ । ଯଦି ନ କରୁଛନ୍ତି ଭୋକିଲା ବ୍ରାହ୍ମଣ ତାଙ୍କ ଆଖି ଆଗରେ ମରିଯିବ, ଭୋକ ଉପାସରେ । ତାଙ୍କୁ ଗୋଟିଏ ଉପାୟ ଦିଶିଲା ସଙ୍ଗେ ସଙ୍ଗେ ନିଜ ପୁତ୍ର ସମରଞ୍ଜୟଙ୍କୁ ଡାକି ନିଜର ମୁକୁଟ ପିନ୍ଧାଇ ସିଂହାସନରେ ଅଭିଷେକ କରାଇଲେ । ଆଉ ଶିବ ମନ୍ଦିର ତିଆରି କରିବା ପାଇଁ ତାଙ୍କୁ ଆଜ୍ଞା ଦେବାକୁ କହିଲେ । ରାଜା ଦେଖିଲେ ବେଳକୁ ବୁଢ଼ା ବ୍ରାହ୍ମଣ ନାହାନ୍ତି । ଶୂନ୍ୟବାଣୀ ହେଲା "ଧନ୍ୟ ରାଜା ରିପୁଞ୍ଜୟ ଧନ୍ୟ ତୁମର ଆତ୍ମନିଷ୍ଠା ତୁମେ ସ୍ୱଦେହରେ କୈଳାସ ଗମନ କରିବ ।" ସତକୁ ସତ ରାଜା ସ୍ୱଦେହରେ କୈଳାସକୁ ଗଲେ ।

କାଶୀରେ ବହୁତ ଶିବ ମନ୍ଦିର ତିଆରି ହୋଇ ଲିଙ୍ଗ ସ୍ଥାପନ ହୋଇ ପୂଜା ପାଇଲେ । ଶିବଙ୍କ ସହିତ ଦେବଗଣ ପୁଣି ଆସି କାଶୀରେ ଅବସ୍ଥାନ କଲେ । ରାଜାଙ୍କ ବଂଶଧର ମାନେ ଶିବଙ୍କ ଆଶୀର୍ବାଦ ପାଇ ପରମ ସୁଖରେ ରହିଲେ ।

---

(କୁନରାଇଜ ପତ୍ରିକାର ୧୯୭୯ ମସିହା ଜୁନ ମାସରେ ପ୍ରକାଶିତ)

# ତିନୋଟି ପ୍ରଶ୍ନ ? ? ?



ମୁସଲମାନ୍ଙ୍କ ରାଜତ୍ୱ ସମୟରେ ଜଣେ ଜଣେ ସମ୍ରାଟ ହିନ୍ଦୁମାନଙ୍କୁ ବହୁତ ଘୃଣା କରୁଥିଲେ । ଦିନେ ଜଣେ ଗରିବ ହିନ୍ଦୁ ପଣ୍ଡିତ ରାଜାଙ୍କ ଦରବାରରେ ପହଞ୍ଚିଲେ । ରାଜା ତାଙ୍କୁ ଦେଖି ଉପହାସ କରି କହିଲେ "ଦ୍ୱିଜନ୍ମା ପଣ୍ଡିତେ ତୁମେ ତ ବହୁତ ପୁରାଣ ଶାସ୍ତ୍ର ବେଦ ପଢ଼ିଛ, କହିଲ ଈଶ୍ବର କେଉଁଠି ଥାନ୍ତି ? କେଉଁ ଆଡକୁ ମୁହଁ କରିଥାନ୍ତି, କଣ କାମ କରନ୍ତି ? ଯଦି ଏହି ପ୍ରଶ୍ନର ଉତ୍ତର ମନ ମାନିଲା ଭଳି ନହୁଏ ତେବେ ତୁମେ ବନ୍ଦି ଖାନାରେ ରହିବ, ଯଦି ଉତ୍ତର ଗୁଡ଼ିକ ସମସ୍ତଙ୍କର ମନୋମତ ହୁଏ ତେବେ ତୁମେ ବହୁତ ପୁରସ୍କାର ପାଇବ ।

ବଡ଼ ଅଡୁଆରେ ପଡ଼ିଲେ ପଣ୍ଡିତେ । ଏ ମୂର୍ଖମାନଙ୍କୁ କେମିତି ବୁଝେଇବେ ଚିନ୍ତାରେ ବିଷୟରେ ସେ ରାଜାଙ୍କୁ ସାତଦିନ ସମୟ ମାଗିଲେ ।

ଘରକୁ ଫେରି ଦିନରାତି ସେଇ ଚିନ୍ତାରେ ଘାରିହେଲେ । ଖାଇବା ପିଇବା ଛାଡ଼ିଦେଇ ବିଛଣାରେ ପଡ଼ି ରହିଲେ । ତାଙ୍କର ଜଣେ ବିଶ୍ବାସୀ ସହକାରୀ ଭାରି ଚତୁର । ସେ ଯେତେବେଳେ ପଣ୍ଡିତଙ୍କର ଏ ଦୁରବସ୍ଥା ଦେଖିଲା, କାରଣ ପଚାରିଲା । ପଣ୍ଡିତେ ସବୁ କଥା ତାଙ୍କୁ ବର୍ଣ୍ଣନା କରି କହିଲେ । ସେ ପଣ୍ଡିତଙ୍କ ଠାରୁ ରାଜାଙ୍କର ପ୍ରଶ୍ନଗୁଡ଼ିକ ଶୁଣି ଶୁଣି ଠିକ୍ ଉତ୍ତର ଭାବି ନେଲେ ଓ ରାଜ ସଭାକୁ ତାଙ୍କୁ ପଠାଇବାକୁ ଅନୁରୋଧ କଲେ ।

ତା ଆରଦିନକୁ ସାତଦିନ ପୂରି ଯାଇଥାଏ । ରାଜାଙ୍କ ପ୍ରହରୀ ଆସି ପଣ୍ଡିତଙ୍କ ଘରେ ପହଞ୍ଚିଲା । ପଣ୍ଡିତେ ବାଧ୍ୟ ହୋଇ ତାଙ୍କ ସହକାରୀକୁ ପଠାଇଲେ ।

ପଣ୍ଡିତଙ୍କ ସହକାରୀ ରାଜାଙ୍କ ନିକଟରେ ପହଞ୍ଚି, ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ହୋଇ ଆସିଛନ୍ତି ବୋଲି କହିଲେ ।

ରାଜା ବିଦ୍ରୂପ କରି କହିଲେ ତୁମେ କିଏ? ପଣ୍ଡିତଙ୍କ ପୋଡ୍ରୁ ଶୁଣି-ଥିବ, ଉତ୍ତର ମନୋନୀତ ନହେଲେ ତୁମେ ବନ୍ଦୀ ହେବ । ଦଣ୍ଡ ମିଳିବ ଜାଣ ରଖିଛ ? ଏଥର ଉତ୍ତର ଦିଅ ? ଏହାଶୁଣି ପଣ୍ଡିତଙ୍କ ସହକାରୀ କହିଲେ 'ଆପଣ ଜାଣନ୍ତି ଯିଏ ସେ ପ୍ରଶ୍ନ ଗୁଡ଼ିକ ଉତ୍ତର ଦେବେ ସେ ଗୁରୁ ଆଉ ଯିଏ ପ୍ରଶ୍ନକର୍ତ୍ତା ସେ ଶିଷ୍ୟ । ଆପଣତ ଜଣେ ଧାର୍ମିକ ବ୍ୟକ୍ତି ମାନ୍ । କିଷ୍ଟପୂ ଜାଣିଥିବେ ଗୁରୁ ଉଚ୍ଚ ଆସନରେ ବସିଲେ ଶିଷ୍ୟମାନେ ପାଦତଳେ ବସିବେ । ତେଣୁ ଆପଣ ମୋତେ ଗୁରୁରୂପରେ ସମ୍ମାନ ଜନକ ସ୍ଥାନରେ ବସାଇ ଆପଣ ଶିଷ୍ୟ ସମାନ ମୋ ପାଦତଳେ ବସିବେ ରାଜାଆଜ୍ଞା କଣ କରିବେ । ବାଧ୍ୟହୋଇ ପଣ୍ଡିତଙ୍କ ସହକାରୀଙ୍କୁ ସିଂହା-ସନରେ ବସାଇ ନିଜେ ସିଂହାସନ ତଳେ ବସିଲେ । ରାଜା ପ୍ରଶ୍ନକଲେ ଈଶ୍ୱର କେଉଁଠି ଥାନ୍ତି ?

ପଣ୍ଡିତଙ୍କ ସହକାରୀ କହିଲେ କଥାରେ ବୁଝାଇ ହେବନି । ଆପଣ କିଛି କ୍ଷୀର ଆଣନ୍ତୁ ? କିଛି କ୍ଷୀର ଆଣି ତାଙ୍କ ପାଖରେ ରଖିଲେ ।

ପଣ୍ଡିତଙ୍କ ସହକାରୀ ପଚାରିଲେ ଏଥିରେ ଲହୁଣୀ କେଉଁଠି ଅଛି ମୋତେ ଦେଖାଇବେ ? ରାଜା କହିଲେ ଏଇ କ୍ଷୀର ଭିତରେ ଅଛି କିନ୍ତୁ ଦେଖାଇବି କପରି ?

ପଣ୍ଡିତଙ୍କ ସହକାରୀ କହିଲେ ଆଖିରେ ନଦେଖିଲେ ସୁଦ୍ଧା ଆପଣ ଜାଣିଛନ୍ତି କ୍ଷୀର ଭିତରେ ଲହୁଣୀ ଅଛି । କ୍ଷୀରକୁ ମନ୍ଥନ କଲେ ଲହୁଣୀ ବାହାରିବ ସେହିପରି ଈଶ୍ୱର ସାରା ବିଶ୍ୱବ୍ରହ୍ମାଣ୍ଡରେ ବ୍ୟାପି ରହିଛନ୍ତି ଏପରିକି ପ୍ରତ୍ୟେକଙ୍କ ହୃଦୟରେ ଅଛନ୍ତି । ହୃଦୟକୁ ମନ୍ଥନ କଲେ ଈଶ୍ୱରଙ୍କ ଦର୍ଶନ ପାଇ ପାରିବ । କଣ ଉତ୍ତର ଠିକ୍ ହେଲାତ ?

ରାଜା ଓ ଦରବାର ଲୋକେ ନିରବରେ ସମ୍ମତି ଜଣାଇଲେ ।

ରାଜାଙ୍କର ଦ୍ୱିତୀୟ ପ୍ରଶ୍ନ ଈଶ୍ୱର କେଉଁଦିଗକୁ ମୁହଁ କରିଥାନ୍ତି ?

ପଣ୍ଡିତଙ୍କ ସହକାରୀ ମନେମନେ ବାହାରି ପଡ଼ିଗଲେ ତାଙ୍କୁ ଡ଼ାକିଲେ ମାତ୍ର ଜଳାଜଳେ ହେଲେ ପ୍ରଶ୍ନ କଲେ ଏହା କେଉଁ ଲୋକଙ୍କୁ ମୂର୍ଖ କରନ୍ତି ? ସହାୟ ନିରୁତ୍ତର ରହିଲେ ।

ପଣ୍ଡିତଙ୍କ ସହକାରୀ ବୁଝାଇ ଦେଇ କହିଲେ ଏହା ଯେଉଁ ଦାଗରୁ ବୃଦ୍ଧିବ ମନୁଆରେ ସମାନ ସେମିତି ଲୋକଙ୍କୁ ବୃଦ୍ଧିବ ଈଶ୍ୱର ସଆଡିକୁ ମୂର୍ଖ କରନ୍ତି । ଏ ପ୍ରଶ୍ନର ଉତ୍ତରରେ ସମସ୍ତେ ସନ୍ତୁଷ୍ଟ ହେଲେ ।

ଶେଷ ପ୍ରଶ୍ନ — ଈଶ୍ୱର କଣ କରନ୍ତି ?

ପଣ୍ଡିତଙ୍କ ସହକାରୀ ରାଜାଙ୍କୁ କହିଲେ ପଣ୍ଡିତଙ୍କୁ ଡ଼ାକିବାକୁ । ପଣ୍ଡିତ ଆସି ଦେଖିଲେ ରାଜା ତଳେ ବସିଛନ୍ତି ତାଙ୍କ ଶିଷ୍ୟ ସିଂହାସନରେ ବସିଛନ୍ତି । ପଣ୍ଡିତ ଅନ୍ୟମାନଙ୍କ ପାଖରେ ବସିଲେ ପଣ୍ଡିତଙ୍କୁ ଓ ରାଜାଙ୍କୁ ଦେଖାଇ କହିଲେ ସମ୍ମାନିତଗଣ ! ଈଶ୍ୱରଙ୍କ କାର୍ଯ୍ୟ ଦେଖନ୍ତୁ ମୋର ଗୁରୁ ପଣ୍ଡିତ ମହାଶୟ ତଳେ ବସିଛନ୍ତି ଆଉ ମୁଁ ତାଙ୍କ ଶିଷ୍ୟ ଉପରେ ବସିଛି ଆଉ ଏ ଦେଶର ମହାମାନ୍ୟ ରାଜା ମୋ ପାଦତଳେ ବସିଛନ୍ତି । ଈଶ୍ୱର କାହାକୁ କେତେବେଳେ ଉଠାନ୍ତି, କାହାକୁ ନିମ୍ନରେ ରଖୁଛନ୍ତି କାହାକୁ ନିଷ୍ପେଷିତ କରୁଛନ୍ତି ଓ ଜଣେ ନଗଣ୍ୟ ବ୍ୟକ୍ତି ଶ୍ରେଷ୍ଠ ସମ୍ମାନର ଅଧିକାରୀ ହେଉଛି । ଏହି ପରିବର୍ତ୍ତନ ହେଉଛି ଈଶ୍ୱରଙ୍କ କାର୍ଯ୍ୟ ।

ମୁସଲମାନ ରାଜା ଓ ତାଙ୍କ ସଭାସଦମାନେ ହିନ୍ଦୁ ପଣ୍ଡିତଙ୍କ ଅସମ୍ଭବ ବୁଦ୍ଧି ଦେଖି ପଣ୍ଡିତଙ୍କ ପାଖରେ ହାର ମାନିଲେ ଓ ତାଙ୍କ ଦରବାରରେ ପଣ୍ଡିତଙ୍କୁ ଶ୍ରେଷ୍ଠ ଆସନ ଦେଲେ ।



---

(ଧୋରେ ବାଇଆ ଧୋ ପତ୍ରିକାରେ ୧୯୭୮ ମସିହାରେ ଭୃଷାପୁ ସଂଖ୍ୟାରେ ପ୍ରକାଶିତ)

# କଳାବଣ୍ଠୀ ଓ କାଳି ବିଲେଇ

କେଜାଣି କାହିଁକି, କାଳି ବିଲେଇଟାକୁ ଦେଖିଲେ କଳାବଣ୍ଠର ନାହିଁ ଡର । ସେ ଅଲକ୍ଷଣି ବିଲେଇଟା ଯିବ୍ କାଳପଡ଼ି କଳାବଣ୍ଠ କୁଆଡ଼େ ଅନୁକୂଳ କରି ଯିବାକୁ ବାହାରିଲେ କେଉଁଠି ଥାଏ କେଜାଣି ମିଆଁଲଗିଟା ଆସି ଆଗେ ଆଗେ ମିଆଁଉ ମିଆଁଉ ଡାକ ଛାଡ଼େ । ସେ ତାକୁ ଯେତେ ଘୃଣା କରେ ସେ ସେତିକି ତା ପାଖରେ ଘସି ହେଉଥାଏ । କଳାର ବୁଢ଼ୀ ମା'ଙ୍କର ସେ ଅତି ଗେଲବସର । ପିଲା-ମାନଙ୍କର ଛଟାକେ ଦୁଧ ନହେଲେ ଚଳିବ ପଛେ କାଳିର ଚଳିବନି । ଯୋଉ ତ ସୁନ୍ଦରୀ, ସେଥିରେ ପୁଣି ଏତେ ଗର୍ବ । ବୁଢ଼ୀମା କହନ୍ତି, “କାଳି ବିଲେଇ ଘରକୁ ଶିରୀ ।” କଳାବଣ୍ଠର ରାଗ ଟିକିଏ କଳା ବୋଲି ତାର ସଙ୍ଗରେ ତାକୁ ସମାନ କରିବେ । କଳାବଣ୍ଠର ଦେହରେ ନିଆଁ ଚଢ଼ିଯାଏ ।

ସେଦିନ ପରୀକ୍ଷା ପାଇଁ ସକାଳୁ ସକାଳୁ ଉଠି ଦାଣ୍ଡ ଦୁଆରେ ପୂର୍ଣ୍ଣକୁମ୍ଭ ବସାଇ କଳାବଣ୍ଠ ଗାଧୋଇ ପାଧୋଇ ଠାକୁର ପୂଜା କରି ଶୁଭ ଅନୁକୂଳରେ ଦୁଆର ମୁହଁକୁ ବାହାରି ପଡ଼ିଲା ବେଳକୁ ସତ୍ୟାନାଶି କେଉଁଠି ଥିଲା କେଜାଣି, କାନ୍ଥ ଉପରୁ ଖପ୍ କରି ଡିଆଁଟେ ମାରିଲା ଯେ କଳସ ଘଡ଼ି ଝନ ଗଡ଼ା ଦେଇ ଓଲଟି ପଡ଼ିଲା । ନଡ଼ିଆଟା ଛିଟିକି କରି କଳାବଣ୍ଠ ଗୋଡ଼ରେ ଖିଟି ହୋଇଗଲା । କଳାବଣ୍ଠ ଗୋଡ଼ଟାକୁ ଆଉଁଷିବ କଣ, ରାଗରେ ଫାଟିପଡ଼ି ଗୋଡ଼ରୁ ଚଟି କାଢ଼ି ତା ମୁହଁ ଉପରକୁ ଫୋପାଡ଼ିଲା । ହେଲେ କାଳି ମହା ଚାଲାକ । ଚଟିଟା ବାଜିବା ପୂର୍ବରୁ କୁଆଡ଼େ ଚମ୍ପଟ । ମନର ରାଗ ମନରେ ମାରି ଗରଗର ହୋଇ ସ୍କୁଲ ଗଲା । ସେଇ କଥା ଭାବି ଭାବି ପରୀକ୍ଷାରେ ଖରାପ ହେଲା ।

ଆଜି ଦିନକର କଥା । ଖରା ଦିନ, ସକାଳୁଆ ସ୍କୁଲ ଥିବାରୁ କଳାବତୀ ତରବରରେ ନାଇ ଖାଇ ନେଇ ସ୍କୁଲ ଗଲା । ଫେରିଲା ବେଳକୁ ବାରଟା ପାଖାପାଖି । ଭୀଷଣ ଉତ୍ତାପ ଖରା ଝାଞ୍ଜିରେ ଦେହଟା ଜଳି ଯାଉଥାଏ । ବହିପତ୍ର ଗୁଡ଼ାକ ଟେବୁଲ ଉପରକୁ ଫୋପାଡ଼ି ଦେଇ ଡାକ ଛାଡ଼ିଲା ବୋଉ, ଶୀଘ୍ର ଭାତ ବାଢ଼, ଭାରି ଭୋକ । ବୋଉ କହିଲେ, "ଯା ମା, ଗାଧୁଆ ଘରେ ପାଣି ଅଛି, ଦୁଇ ଗିଲା ଢାଳି ନାଇ ଦେଇକି ଆ, ମୁଁ ଭାତ ବାଢ଼ୁଛି । ଆଜି ତୋ ପାଇଁ ବଢ଼ିଆ ଭାଜିକି ମାଛ ମୁଣ୍ଡ ରଖିଛି ।" ମାଛ ମୁଣ୍ଡ କଳାର ଅତି ପ୍ରିୟ । ଖୁସି ଖୁସି ତରତର ହୋଇ ଗାଧୁଆ ଘରକୁ ଚାଲିଗଲା । ପାଣି ଦି'ଗିଲା ଦେହରେ ଢାଳି ହୋଇପଡ଼ି ଦେହରେ ଜାମାଟା ଗଳାଇ ପକେଇ ଠାକୁର ଘରେ ମୁଣ୍ଡିଆ ମାରିବାକୁ ପଶିଗଲା । ସେତେବେଳକୁ ବୋଉ ତାର ପିଢ଼ାପାଖ ଟେବୁଲ ଉପରେ ଭାତ ବାଢ଼ି ସାରିଲେଣି । ଗରମ ଭାତ ସାଙ୍ଗକୁ ଭାକୁର ମୁଣ୍ଡ ଝୋଳ, ବସା ଦହି, ଛୁଇଁ ବାଇଗଣ ସନ୍ତୁଳା, ବଡ଼ି ଭଜା, ସବୁ ଗୁଡ଼ିକ କଳାର ଅତି ପ୍ରିୟ । ଆଜିକର ଚଉକସ ଭୋଜନଟାଏ ହେବ । କଳା ଠାକୁର ଘରେ ଆଖି ବନ୍ଦ କରି ଗୁଣୁଗୁଣୁ ହୋଇ ପ୍ରାର୍ଥନା ଆରମ୍ଭ କରି ଦେଲା । ହଠାତ୍ ଧଡ଼୍ ଧାଡ଼୍ ଶବ୍ଦ ସାଙ୍ଗକୁ ପେଟ୍ ରେ ଝଣ୍ ଝାଟ୍ ଶବ୍ଦ । ଆଖି ଖୋଲି ଉଙ୍କି ମାରି ଚାହିଁଲା ବେଳକୁ ତାର ପ୍ରିୟ ଲୋଭନୀୟ ମାଛ ମୁଣ୍ଡଟାକୁ ପ୍ଲେଟ ସହ ତଳେ ପକାଇ ଦେଇ ଡାଆଣୀ କାଳି ଘାଉଁ ଘାଉଁ କରି ଖାଇ ଚାଲିଛି । ଆଉ କି ପ୍ରାର୍ଥନା, ତାଙ୍କୁରୁ ଚେତା ଯାଏ ତାର ନିଆଁ ହୋଇଗଲା । ପିଢ଼ାଟାଏ ଟାଣି ଆଣି ଫୋପାଡ଼ି ଦେଲା ତା ମୁହଁକୁ । କାଳି ମହା ଚାଲାକ । ପିଢ଼ା ବାଜିବା ପୂର୍ବରୁ ମାଛ ମୁଣ୍ଡ ସହ ଫେରାର । କଳାବତୀ ରାଗରେ ପାଣି ଛୁଇଁଲାନି । ଆଜି ତାକୁ ଏ ଘରୁ ବାହାର ନକଲେ ଆଉ ପାଣି ଛୁଇଁବନି । ସମସ୍ତେ ଡାକି ଡାକି ନୟାନ୍ତ । ସେଇ ଏକ ଜିଦ୍ କାଳି ଏ ଘରୁ ଯିବ । ଖଟ ଉପରେ ଶୋଇ ଶୋଇ ତାକୁ ତଡ଼ିବା ପାଇଁ ଅନେକ ପ୍ରକାର ଉପାୟ ଭାବିନେଲା । ଶେଷକୁ ମିଳିଗଲା ଗୋଟେ ଉପାୟ । ଆନନ୍ଦରେ କଳାବତୀ ଡାକ ଛାଡ଼ିଲା ଚାକର ମଧୁଆକୁ । ମଧୁଆ ଆସି ଛିଡ଼ା ହେବାରୁ ତାକୁ କହିଲା, ମଧୁଆ, ଏବେ ଯେଉଁ ଓଡ଼ିଆ ସିନେମାଟା ପଡ଼ିଛି ତୁ ଦେଖିଲୁଣି କିରେ ।" ମଧୁଆ ହାତ ମଳି ମଳି କହିଲା "ନାଇଁ ଦେଈ, ପଇସା କୁଆଡ଼ୁ ପାଇବି । ଏ ମାସର ଦରମା ବାପା ତ ଆଗରୁ ନେଇଯାଇଛନ୍ତି ।

କଳାବଉଣ ଜାଣିଲା ମଧୁଆ ସିନେମା ବୋଲିଲେ ନାଆଁକୁ କ୍ଷେଇଁ ପଡିବ । ସେ ତାକୁ ଦୁଇଟଙ୍କିଆ ନୋଟଟିଏ ଧରେଇ ଦେଇ କହିଲା, "ନେ ସିନେମା ଦେଖିବୁ; କିନ୍ତୁ ମୋର ଗୋଟିଏ କାମ କରିଦେବୁ ।" ଟଙ୍କା ଦେଖି ସିନେମା ନାଁ । ଶୁଣି ମଧୁଆ ଆନନ୍ଦରେ କୁନ୍ଦିକି ଉଠିଲାଣି । ଚଟାପଟ୍ କହିପକାଇଲା "ଦେଇ ଶୀଘ୍ର କୁହ କଣ କାମ !" କଳା ଫୁସ୍ ଫୁସ୍ କରି କହିଲା, ଏଇ କାଳିଆ ବଳଦଟାକୁ ନେଇ ପାରିବୁ ? ମଧୁଆ କହିଲା ଏଇ କଥା । ମୁଁ ସେଟାକୁ ଅଖାରେ ପୁରେଇ ସାଇକେଲ ପଛପଟେ ନେଇ ତିନ ଗାଁ ମାଇଲ ଦୂରରେ ଛାଡ଼ି ଦେଇ ଆସିବି । କେହି ଜାଣିବେନି । ଖାଲି ଟିକିଏ ଅନ୍ଧାର ହୋଇଯାଉ । ଟଙ୍କା ଧରି ମଧୁଆ ଖୁସି ହୋଇ ଚାଲିଗଲା ।

ରାତି ନ'ଟା ବେଳକୁ ଫେରିଆସି କହିଲା, ଦେଇ କାମ ଖତମ । ତୁମେ ଏଥର ଯାଅ ଖିଆପିଆ କରି ଆରାମରେ ଶୁଅ । କଳାବଉଣ ଖୁସି ହୋଇ ପେଟେ ଖାଇ ଆରାମରେ ଶୋଇଗଲା । ତାର ଶତ୍ରୁ ଆଜି ଗଲା । ଆଜି ସେ ବାଟ ପାଇବ ନାଁ ଫେରି ଆସିବ । କାନ୍ଥ ଘଣ୍ଟାରେ ଠନ୍ ଠନ୍ ହୋଇ ଛ'ଟା ବାଜିବାରୁ କଳାବଉଣର ନିଦ ଭାଙ୍ଗିଲା । ଆରେ କେତେବେଳେ ସକାଳ ହୋଇଗଲାଣି । ହଠାତ୍ ମୁଣ୍ଡ ଉପରୁ ମିଆଁଉଁ ସ୍ୱର ଶୁଣି ଚାହିଁଲା ବେଳକୁ କଣ ସେ ଦେଖୁଛି.........ହେ ଭଗବାନ, ସେଇ କରାଳ ବଦନା ଅଲକ୍ଷଣୀ କାଳ ....



(କୁଆଁତାର ପତ୍ରିକାର ୧୯୭୭ ମସିହାରେ ତୃତୀୟ ସଂଖ୍ୟାରେ ପ୍ରକାଶିତ)

# ପାର୍ବତୀଙ୍କ ଘରପୋଡ଼ି ।

ମା ପାର୍ବତୀ ଶିବଙ୍କ ସାଙ୍ଗରେ ବୈକୁଣ୍ଠପୁର, ଇନ୍ଦ୍ରଭୁବନ, ବ୍ରହ୍ମାଙ୍କପୁର ବୁଲିବୁଲି ଆସିଲା ପରେ ନିଜର କୌଣସି ଘର ନଥିବାରୁ ତାଙ୍କୁ ଭାରି ଲାଜ ମାଡ଼ିଲା । ସେ ଶିବଙ୍କୁ ଖୁବ୍ ଖୋସାମତ କରି ଅଭିମାନିଆ ହୋଇ କହିଲେ ପ୍ରଭୁ ! ଯେତେ ଦେବତା ସମସ୍ତଙ୍କ ଘର କି ସୁନ୍ଦର ହୋଇଛି । ଆଉ ତୁମେ ଦେବ ଦେବ ମହାଦେବ ହୋଇ ପାହାଡ଼ ଶିଖରେ ଗଛମୂଳେ ରହୁଛ ମତେ ଭାରି ଲାଜ ମାଡୁଛି । ଆମର ଗୋଟିଏ ଘର କରେନ୍ତି ନି ? ପ୍ରଭୁ ମହାଦେବ ହୋ ହୋ ହୋଇ ବହେ ହସିଲେ । କହିଲେ ଦେଖ ମୁଁ ହେଲି ସନ୍ୟାସି ଲୋକ । ମୋର ଘର ଦୁଆର କରୁ ଲୋଡ଼ା ନାହିଁ । ମୋର ପିନ୍ଧିଲା ବସନ ମଧ୍ୟ ମୁଁ ଦାନ କରି ଦେବି । ତୁମର ଯଦି ଇଚ୍ଛା ହେଉଛି ତୁମେ କର । ମତେ ସେ ଅଡୁଆରେ ପୁରାଅନି । ଏହା କହି ସେ ଡମ୍ବରୁ ବଜାଇ ବଜାଇ କୁଆଡ଼େ ଚାଲି ଗଲେ । ପାର୍ବତୀଙ୍କୁ ଭାରି ଆପମାନ ଲାଗିଲା । ସେ ନିଜର ଜିଦ୍ ବଜାୟ ରଖିବା ପାଇଁ ଘରଟିଏ କରିବାକୁ ଲାଗି ପଡ଼ିଲେ । ଅଳପ ଦିନରେ ଘରଟିଏ ତିଆରି ହୋଇଗଲା ।

ଶିବ ଯେତେବେଳେ ସଞ୍ଜ ବେଳକୁ ଫେରିଲେ ଘର ଦେଖି କାବା । ଯଥା ସମୟରେ ଘର ପ୍ରତିଷ୍ଠା କରିବା ପାଇଁ ବୃହସ୍ପତିଙ୍କ ଡକାହେଲା । କେତେ ମୁନିଋଷି ଆସିଲେ । ବୃହସ୍ପତି ଦେଖିଲେ, ଘରଟି ଅଶୁଭ ବେଳାରେ ଆରମ୍ଭ ହୋଇଛି । ଘରେ ରହିବା ପୂର୍ବରୁ ନିଆଁ ଲାଗିଯିବ ପାର୍ବତୀଙ୍କ ମନଭିତରି ଦୁଃଖ ହେଲା । ସେ ପୁଣି ମନେ ମନେ ଭାବିଲେ ସ୍ୱାମୀ ଯେତେବେଳେ ଦେବ ଦେବ ମହାଦେବ, ସାରା ସଂସାର ତାଙ୍କର ଆଜ୍ଞାଧୀନ । ଛାର ଅଗ୍ନି କଣ ତାଙ୍କ କଥା ମାନିବେନି ? ସେ ଯାଇ ସ୍ୱାମୀଙ୍କୁ ଗେହ୍ଲେଇ ହୋଇ କହିଲେ ପ୍ରଭୁ ଘରସିନା କଲି କିନ୍ତୁ ସେଥିରେ ରହିବା

ପୂର୍ବରୁ ନିଆଁ ଲାଗିଯିବ ବୋଲି ବୃହସ୍ପତି ଗଣନା କରି କହୁଛନ୍ତି । ତୁମେତ ସଂସାର ଠାକୁର ତୁମେ ଯାଇ ଅଗ୍ନିକୁ ମନାକର । ଶିବ ଦେବତା କହିଲେ କି ଅଜ୍ଞା କଥା ଯଦି ଯୋଗଲଗ୍ନରେ ଲେଖାଅଛି ଘରଟା ଜଳି-ଯିବ ଆମେ ଦେବ ହୋଇଲେ ବୋଲି ଆମେ ତାକୁ ଭାଙ୍ଗି ଦେବା କିପରି ଖାଲି ମଣିଷ ମାନେ ସବୁ ଭୋଗୁଥିବେ ଆମ ବେଳକୁ ସବୁ ନିୟମ ବଦଳି ଯିବ ?

ପାର୍ବତୀ ମୁହଁ ଫୁଲେଇ କାନ୍ଦି କାନ୍ଦି ଭଜନ ଉପାସ ରହିବା ପରେ ଶିବ ଯାଇ ତାଙ୍କୁ ବୁଝେଇଲେ । କ'ଣ କରିବେ ଭଜନ ହେଲା ରଖାବନ୍ଦ । ଠକ୍ ଠକ୍ ଉପାସ ରହିଲେଣି । ପାର୍ବତୀଙ୍କର ଏକା ଜିଦ୍ ତୁମେ ଯାଇ ଅଗ୍ନିଦେବତାଙ୍କୁ କୁହ । ଶିବ କହିଲେ ଦେଖ ପ୍ରିୟେ, ମୁଁ ଯାଇ ତାଙ୍କୁ କହିବ ଯଦି ମୋ କଥା ନ ରଖନ୍ତି ଆଉ ନିତି ନିୟମ କାଢ଼ନ୍ତି ମୁଁ ଆଉ କଣ କରିବ ? ପାର୍ବତୀ କହିଲେ ଠିକ୍ ଅଛି, ଯଦି ସେ ରାଜି ହୋଇଯାନ୍ତି ଭଲ କଥା, ଯଦି ରାଜି ନ ହୁଅନ୍ତି ତୁମେ ଡମ୍ବରୁକୁ ବଜାଇ ଦେଲେ ମୁଁ ନିଜେ ସଙ୍ଗେ ସଙ୍ଗେ ଘର ଜଳାଇ ଦେବି । ସେ କାହିଁକି ମୋର ଏତେ ସୁନ୍ଦର ଘର ନଷ୍ଟ କରିବେ, ମୁଁ ସହିପାରିବିନି ଶିବ ଏଥର ରାଜିହୋଇ ଅଗ୍ନିଙ୍କ ପାଖକୁ ଲସର ପସର ହୋଇ ଧାଇଁଲେ ପାର୍ବତୀ ଦେବୀ ଘର ପାଖରେ ସେମିତି ଅଖିଆ ଅପିଆ ବସି ରହିଲେ । କେତେବେଳେ ଡମ୍ବରୁ ଶବ୍ଦ କାନେ ନ ଶୁଭିବ !!

ଶିବ ଦେବତା ଯେମିତି ଯାଇ ଅଗ୍ନି ପୁରରେ ପହଞ୍ଚିଛନ୍ତି ଅଗ୍ନି ଦେବତା ମହାଖୁସି । ଦେବ ଦେବ ମହାଦେବ ତାଙ୍କ ଦୁଆରେ ଉଭା ହୋଇଛନ୍ତି । ସେ ଆନନ୍ଦରେ ଗୋଡ଼ ଧୋଇ ଦେଇ ଆସନରେ ନେଇ ବସାଇଲେ ହାତ ଯୋଡି ପଚାରିଲେ ପ୍ରଭୁ ଏ ଅଧମ ଦୁଆରେ କି କାରଣେ ବିଜେ ହେଲେ ? ଶିବ ଦେବତା ମୁରୁକି ମୁରୁକି ହସି କହିଲେ ହଇହୋ ଅଗ୍ନି ଦେବତା ଆମ ପାର୍ବତୀ ଦେବୀ ଗୋଟିଏ ଘର କରିଛନ୍ତି ତାକୁ ଶୁଭଦେବା ପାଇଁ ବୃହସ୍ପତି ଗଣନା କଲାବେଳକୁ ଜଣାଗଲା ସେ ତୁମ ମୁଖରେ ଯିବ । ସେଥିପାଇଁ ପାର୍ବତୀ ଦେବୀ କାନ୍ଦି କାନ୍ଦି ଅସମ୍ଭାଳ ମତେ ପଠାଇଛନ୍ତି ତୁମେ ସେ ଘରକୁ ତୁମ କୋପଦୃଷ୍ଟିରୁ ରକ୍ଷାକର ।

ଅଗ୍ନି ଦେବତା କହିଲେ ପ୍ରଭୁ ଏଇ ଗୁରୁକଥାଟା ପାଇଁ ଏତେ କଷ୍ଟକରି ଆପଣ ଆସିଲେ ! ମୁଁ ଟିକିଏ ଖବର ପାଇଥିଲେ ପାଦ ତଳକୁ ଦୌଡ଼ିଆନ୍ତି କହି ଗୋଡ଼ତଳେ ପଡ଼ିଗଲେ । ଶିବ ତାଙ୍କ ଭକ୍ତିରେ ଗଦ୍ଗଦ୍ ହୋଇଯାଇ କହିଲେ ହଉ ବାବା ଉଠ ମୁଁ ତୁମ ଭକ୍ତିରେ ବହୁତ ଖୁସି ହୋଇଗଲି କଣ ବର ମାଗୁଛ ମାଗ । ଅଗ୍ନି ଦେବ ଆହୁରି କୃତ୍ୟ କୃତ୍ୟ ହୋଇଗଲେ ଓ ହାତଯୋଡ଼ି ମୁଣ୍ଡକୁ ଭୂଇଁରେ ଛୋଁ ଛୁଆଁ କରି ବାଡ଼େଇ କହିଲେ ଦେବ ହେ ମୋର ଗୋଟିଏ ମୋର ଅଭିଳାଷ ପୂର୍ଣ୍ଣ କର ଆପଣଙ୍କ ତାଣ୍ଡବ ନୃତ୍ୟ ସମସ୍ତେ ଦେଖିଛନ୍ତି କେବଳ ମୁଁ ଦେଖିନାହିଁ । ଥରେ ମାତ୍ର ଡ଼ମ୍ବରୁ ବାଦ୍ୟ ବଜାଇ ଆପଣଙ୍କ ତାଣ୍ଡବ ନୃତ୍ୟ ଦେଖାନ୍ତୁ । ଶିବତ ଭୋଳାନାଥ ଯେମିତି ତାଙ୍କ ଭକ୍ତ ଗଦ୍ ଗଦ୍ ବାଣୀ ଶୁଣିଛନ୍ତି ଆରମ୍ଭ କରିଦେଲେ ତାଣ୍ଡବ ନୃତ୍ୟ । ଡବ ଡବ ଡ଼ମ୍ବରୁ ନାଦରେ ତିନିପୁର କମ୍ପିଗଲା ।

ଏଣେ ମା ପାର୍ବତୀ ତାହା କାନେଇ ବସିଥିଲେ । ଯେମିତି ଡ଼ମ୍ବରୁ ନାଦ ଶୁଭିଛି । ଶକତ ନିଆଁ ହୁଲାଟାଏ ଧରି ଘରେ ଟେକିଦେଲେ । ଯାଃ ମୋ ଘର ପୁଣି ଅଗ୍ନି ଦେବତା ଖାଇବ ? ତା ଆଗରୁ ମୁଁ ନିଜେ ଜାଳିଲି ଦେବି ।

ସେଆଡ଼େ ଶିବ ନାଚ ନାଚ ହାଲିଆ ହୋଇ ହସି ହସି ଆସି ଡାକ ଛାଡ଼ିଲେ ପାର୍ବତୀ, ପାର୍ବତୀ ତୁମ ମନଖୁସି । ଅଗ୍ନିଦେବତା ରାଜି ହୋଇଗଲେ । କିନ୍ତୁ କ'ଣ ଦେଖୁଛନ୍ତି ପାର୍ବତୀଙ୍କ ଘରଟି ହୁରୁ ହୁରୁ ଜଳୁଛି ପାର୍ବତୀ କାନ୍ଦୁଛନ୍ତି । ଶିବ ସବୁ ବୁଝି ପାରି କହିଲେ, ବୁଝିଲ ଯାହା ନିୟତିର ନିର୍ଦ୍ଦେଶ ଅଛି ତାକୁ ଭଗବାନ ମଧ୍ୟ ରୋକିବାକୁ ଅକ୍ଷମ ଏଣୁ ମନ ଦୁଃଖ କରିବା ଆଦୌ ଉଚିତ ନୁହେଁ । ସେଇଦିନ ଠାରୁ ପାର୍ବତୀ ଭୁଲିରେ ଘର ନାଁ ଧରନ୍ତିନି ।

---

(କୁନରାଇଜ ପତ୍ରିକାର ୧୯୭୯ ମସିହାରେ ଫେବୃୟାରୀ ଓ ମାର୍ଚ୍ଚ ମାସର ବିଶେଷ ସଂଖ୍ୟାରେ ପ୍ରକାଶିତ)

# ଜମ୍ବୀ ଅଜାଙ୍କ ଜଉତୁକ କଥା



ଜମ୍ବୀ ଅଜା ଯେଉଁ ଦିନ ଠାରୁ ବାହା ବେଦୀରୁ ଶିଶୁପାଳ ହୋଇ ଲେଉଟି ଆସିଲେଣି ଏ ନଆଁଲଗା ଗାଁରେ ହଗୁରା ଛୁଆ ଠାରୁ ଲେଞ୍ଚରା କୋତରା ବୁଢା ପର୍ଯ୍ୟନ୍ତ ତାଙ୍କୁ ବାଟରେ ଘାଟରେ ଦେଖିଲେ ଡାହାଣ ହାତ ଟେକ ପାଞ୍ଚ ଆଙ୍ଗୁଠି ଦେଖାଇ ଦେଉଛନ୍ତି । କାଲ ଠାର କାଲ ମା ଜାଣିଲା ପରେ ଅଜା ଆରମ୍ଭ କରି ଦିଅନ୍ତି ଜାବଡ଼ାମୁ ଖରାପ ଗାଳି । ଗାଁ ଟୋକାଏ ମଜା ଦେଖିବା ପାଇଁ ତାଙ୍କୁ ଦାଣ୍ଡରେ ଚଲାଇ ଦିଅନ୍ତିନ ।

କଥା କଣ କି ଅଜା ଆମର ଯେତେବେଳେ ଅବକାଶ ପିଅନ ଗୃହକର୍ମ ଖଣ୍ଡିଏ ପାଇ ଥିଲେ ସେତେବେଳେ ତାଙ୍କ ବାହାଘର ପ୍ରସ୍ତାବ ଆସିଥିଲା ଜଗତସିଂହ ପୁରରୁ । ଅଜା ଜମାଜୋଡ଼ ହୋଇ ଗୁଡ଼ାଏ ବର-ଯାତ୍ରୀ ଧରି ବାଣ ଫୁଟାଇ ଢ଼ୁମ ବାଜା ବଜାଇ ଯାଇ ପହଞ୍ଚି ଗଲେ ଶ୍ଵଶୁର ଘରେ । ବରଯାତ୍ରୀଙ୍କୁ କନ୍ୟାଘର ଖିଆପିଆ କରେଇ ବାହା-ଘରରେ ଲାଗିପଡ଼ିଲେ । ବେଦୀ ଉପରକୁ ଗଲେ । ହାତଗଣ୍ଠି ପଡ଼ିଲା ବେଳକୁ ଅଜା ଚିଙ୍ଗି କରି ମୁହେଁଇଲେ । କଥାକଣ, ଜଉତୁକ ସାମାନ ବେଦୀ ଉପରେ ଥୁଆ ହେଲେ ହାତଗଣ୍ଠି ପଡ଼ିବ ନହେଲେ ନାହିଁ । ଅଜାଙ୍କ ପୁରୋହିତ ରଙ୍ଗ ଗୁଡ଼ିଲା ଆଣ ଘଣ୍ଟା ସାଇକେଲ । ରେଡିଓ ନହେଲେ ବାହାଘର ଏଇଠି ରହିଲା । କନ୍ୟାର ବାପ ଗରିବ ଘଣ୍ଟା ସାଇକେଲ କୁଆଡ଼ୁ ଦେଇ ପାରିବ । ପାଞ୍ଚଟା ଝିଅ ଜମି ବନ୍ଧା ଦେଇ କେତେ କଷ୍ଟ-ରେ ବଡ଼ ଝିଅଟିକୁ ବାହା ଦେଉଛି । ସେ ବିଚରା ବେକରେ ଗାମୁଛା ପକାଇ ଗୋଡ଼ତଳେ ଦଣ୍ଡା ଦଣ୍ଡା ହୋଇ ପଡ଼ି ଯାଉଥାଏ । ସେଇ ଏକା ଜିଦ୍ ଜଉତୁକ ଆସିଲେ ହାତ ଗଣ୍ଠି ପଡ଼ିବ । ଗୃହକର୍ମ ଆ ଜୋଇଁ ମାସକୁ ଦି' ଶହ ଟଙ୍କା ଦରମା, ପୁଣି ଉପୁରି ଚଳୁପୁରି ଅଛି । ମାହାଳିଆ ପାଇଲ କି ?

ଠିକ୍ ଏତିକି ବେଳକୁ ଅଜାଙ୍କ ଶାଳା ସଚ୍ଚିଦାନନ୍ଦ ଷଠ୍ କଣ୍ଠ ଗୋଟାଏ ଚିତ୍କାର କାଢ଼ିଲା । ସେ ବେଦୀ ଉପରକୁ ଆସି ଜମି କବଲା ଖଣ୍ଡିକ ଥୋଇଦେଇ କହିଲା ଏହିଟି ଜମି କବଲା ଦେଖ ନେଲି । ଜଉତୁକ ଅଲବତ୍ ଦିଆହେବ । ମୋର କେବଳ ଗୋଟିଏ କଥା ଏଇଠି ସମସ୍ତଙ୍କ ସାମାନାରେ ପାଞ୍ଚ ମିନିଟରେ ମାଣିକ ଚଣିକିଆ ଯଦି ଜୋଇଁ ସାଆନ୍ତ ମାଗିଦେବେ ଏବେ ଜିନିଷକ ଘଣ୍ଟା ସାଇକେଲ ରେଡ଼ିଓ ଦେବ ।

ଅଜାଙ୍କ ପାଟି ଆବା ଆବା ହୋଇଗଲା । କୋଉ ପିଲାଦିନେ କେତେବେଳେ କଣ ପଢ଼ିଥିଲେ ତାଙ୍କର ଆଉ ମନେଅଛି । ଗୁହାଳିକୁ ନ ଯାଇ ଅବଧାନଙ୍କୁ କେତେ ଠକିଛନ୍ତି । ଚଣିକିଆ ତ ସେ ସ୍କୁଲ ପଢ଼ିନାହାନ୍ତି । ଖାଲି ନାଁ ଦସ୍ତଖତ ଟି ବହୁତ କଷ୍ଟରେ ଶିଖିଛନ୍ତି । ଟଙ୍କା ପଇସା ହାତ ଗୁଞ୍ଜା ଦେଇ ଜାଲ୍ ସାର୍ଟିଫିକେଟ ଟିଏ ଯୋଗାଡ଼ କରି ହାକିମଙ୍କୁ ମୁଠାଏ ଟଙ୍କା ଦେଇ ଚାକିରି ଖଣ୍ଡେ ପାଇଛନ୍ତି । ଚଣିକିଆ କୁଆଡୁ ମାଗିବେ । ମୂକ ହୋଇ ବସି ରହିଲେ । ପାଟି ଫିଟିଲାନି । ବାହାଘରରେ ଜମା ହୋଇଥିବା ଲୋକେ ହୋ ହୋ ହୋଇ ହସିଲେ । ଓଢ଼ଣାଟାକୁ ଫୋପାଡ଼ି ଦେଇ ବେଦୀ ଉପରୁ ତଳକୁ ଡେଇଁ ପଡ଼ିଲା ଅଜାଙ୍କ ଭାବି ଘରଣୀ । କହିଲା ମୂର୍ଖଟାକୁ ମତେ ବାନ୍ଧି ଦେଉଛ । ମୁଁ ମାଟ୍ରିକ ପାସ୍ କରିଛି ମୁଁ ମୋଟେ ବାହା ହେବିନି କହି ସେ ଢମ ଢମ ହୋଇ ଘରକୁ ପଶିଗଲା । ଗାଁ ବାଲା ଟେହ୍ୱ ଟାପରା କରି ଅଜାଙ୍କୁ ବେଦୀ ଉପରୁ ଉଠାଣି ଗୁଡ଼ାଏ କୋରଡ଼ା ଦେଲେ । ବଡ଼ ଯାଗୀଏ ଉଠ ଛୁ ଦେଲେ । ଲାଜ ଅପମାନରେ ଜଳି ଜଳି ଗ୍ଲେଟେଇ ଗ୍ଲେଟେଇ ଜୀବନ ବିକଳିଆ ହୋଇ ଅଜା ଗଡ଼ି ଗଡ଼ି ଧାଇଁ ଧାଇଁ ପାହାନ୍ତା ବେଳକୁ ଗାଁରେ ପହଞ୍ଚିଲେ । ସେଇ ଦିନଠାରୁ ଲୋକେ ତାଙ୍କୁ ଦେଖିଲେ ପାଞ୍ଚ ଆଙ୍ଗୁଠି ଦେଖାଇ ଦିଅନ୍ତି । ସେଇଠୁ ଦେଖିବ ଅଜାଙ୍କ ନାଟ । କିଆଁ ଲାଗି ଚଣିକିଆ କାଳହୋଇ କନିଆ ଗଲା ଜଉତୁକ ଗଲା ।

---

(କୁଆଁତାରା ପତ୍ରିକାର ୧୯୭୮ ମସିହାରେ ଜୁନ ସଂଖ୍ୟାରେ ପ୍ରକାଶିତ)

# ଗୋଲକିଆ ଅଜାଙ୍କ ଗୋଇନ୍ଦାଗିରି

ଗୋଲକିଆ ଅଜା ସେଦିନ ବଜାର ଯାଇ ଫେରୁ ଗୁଡ଼ିଆନୀ ଛକରେ ପାନ ଦୋକାନରେ ଗୁଡ଼ାଏ ଲୋକ ଜମା ହୋଇ କଣ ଗୁରୁତର ଆଲୋଚନା କରୁଥିବାର ଦେଖିଲେ । ଅଜା ମଧ୍ୟ କୌତୁହଳ ମେଣ୍ଟାଇ ନପାରି ସେଠି ଠିଆ ହୋଇ ପଡ଼ିଲେ କଥାକଣ । 'ସମାଜ'-ଟାରେ ବାହାରିଥିବା ଗୋପି ସାହୁ ଦାଢ଼ିର ଫଟୋ ତଳେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଛି । ଗୋପି ସାହୁ ଡକାୟତକୁ ଧରାଇ ଦେଲେ ପାଞ୍ଚ ହଜାର ଟଙ୍କା ପୁରସ୍କାର ମିଳିବ । ଅଜାଙ୍କ ପଇସା ଖୋଜିଆ ମନଟା ଉଚାଟେଇ ହେଲା । ଆହା ସିଏ ମିଳିଲେ ଧରେଇ ଦିଅନ୍ତେ ଏବେ ନଗଦା ନଗଦ ପାଞ୍ଚ ହଜାର ପାଇଯାନ୍ତେ ।

ସେତ ପୁଣି ଦିନେ ପୁଲିସ ଗସ୍ତ କରୁଥିଲେ । କେତେ ଚୋର ଦାଗୀଙ୍କୁ ଏଇ ହାତରେ ଧରିଥିଲେ । ଅବଶ୍ୟ ହାତ କୁଞ୍ଚା ପରେ ସେମା ଛୁଡ଼ ଦେଉଥିଲେ । ଗୋପି ସାହୁ ସାଙ୍ଗରେ ମଧ୍ୟ ଥରେ ଦୁଇଥର ଥାନାରେ ଦେଖା ହୋଇଛି । ଆଜି ସିନା ପାଞ୍ଚ ବରଷ ହେଲା ଚାକିରି ଗଲାଣି କିନ୍ତୁ ତାଙ୍କ ପେନ୍ସିଆ ମନଟା ସେମିତି ଅଛି । ସେ ବଜାରରୁ ଫେରି ନାତି ମାନଙ୍କ ଆଗରେ ବାହାଦୁରୀ ଦେଖେଇ କହିଲେ, ମୋର ଭୟରେ ଗୋପିଆ ଆମ ସାଇରେ ପଶି ପାରୁନ । ତାକୁ ମୁଁ ବହୁତ ଥର ଧରିଛି । ମୋ ହାତରୁ ଛେଚା ଖାଇ ଦି ମାସ ଯାଏ ଉଠିପାରି ନ ଥିଲା । ଆସନ୍ତାକ ପୁଅ ଗୋଟାଏ ମିନିଟ୍‌ରେ କାବୁ କରି ଧରେଇ ଦିଅନ୍ତି ପାଞ୍ଚ ହଜାର ଟଙ୍କା ଗଣି ଆଣନ୍ତି । ନାତିମାନେ ମନେ ମନେ ହସି ଠରା ଠରି ହୋଇ କଥା ହେଲେ ବୁଢାକୁ ପାଣିଦେବା ।

ଦୁଇ ଦିନପରେ ନାତି ଲେଖାହେବ 'ପିଠନ' ଆସି ତାଙ୍କ କାନରେ ଚୁପ୍ ଚୁପ୍ କହିଲା ଅଜା ଆମେ ଶୁଣିବାକୁ ପାଉଛୁ ଗୋପି ସାହୁ କୁଆଡ଼େ ଏଇ ଚନ୍ଦ୍ରଧୂଳି ଘରେ ଚୋରି କରିବ ବୋଲି ଠିକ୍ କରିଛି ।

ଅଜା ରାଗରେ ମଧ୍ୟ ଡଙ୍ଗିପାରେ ଲୁଚିମ ଟିକିଏ ସାବଧାନରେ ଶୋଇବ । ଲୁମ ଘଣ୍ଟାରେ ତାଙ୍କ ଘରକୁ ଲାଗିଛି । ସେ ସେଇଁଠି ଚେଷ୍ଟା କରୁଛି ଏମିତି ଅଜାଙ୍କୁ ଉଡ଼ା ଖବର ଦେଇ ଦେଉଛି ।

ଗୋବରା ଅଜାଙ୍କୁ ମିଳିଗଲା ମଉକା । ରହ ବେଟା ଗୋଟିଏ ଥରରେ ଯିବୁ କୁଆଡ଼େ । ତା'ପରେ ନାକଟା ଧରିଲେ ପାଞ୍ଚ ହଜାର ଟଙ୍କା ମାଗିବ । ଯଦି ପାଞ୍ଚ ହଜାର ପାଇଯାଏ ଆଗ କୁଡ଼ିଆ ଘର ଖଣ୍ଡକ ଟାଇଲି ଲଗାଇ ଦେବ । ଗାଁରେ ସମସ୍ତେ ବଡ଼ଲୋକ ବଣ୍ଟା ଘରକୁ ନେଲେଣି ତାକୁ ମଧ୍ୟ ନେଇ ଆସିବ । କିଛି କୁକୁଡ଼ା କିଣି ପାଳିବ । ଅଣ୍ଡା ଖାଇବା ବୃଦ୍ଧଙ୍କ ଗଲାଦିନୁ ଚାଲାଣି । ଯାହା ଟେଲିଭିଜନ ଶୁଣିଲ କଣାକୁ ନଅଙ୍କ । କୁକୁଡ଼ା ପାଳିଲେ ନିତି ଅଣ୍ଡା ଭଜା ତରକାରୀ ବେଶ୍ ଜମିବ । ଯଦି ଜମି ଗାଈ ଟିଏ କିଣାହୁଅନ୍ତା ମନ ବୋଧିଆ ଖିରି ଖିଆହୁଅନ୍ତା । ଏଣୁ ନାଲି ପାଣି 'ରୁ' ଗ୍ଲାସକରେ ଅଭ୍ୟାସ ଆସିଲାଣି ଚେନା ଖିଆ ଦହି କେତେ ଖାଇବୁ ଖାଉଥା ।

ସନ୍ଧ୍ୟା ହେଲା ମାତ୍ରେ ଅଜାଙ୍କ ମନଟା ଚଙ୍ଗ ଚଙ୍ଗିଆ ଲାଗୁଛି । ଅଳପକିଆ ଦୁଇଟା ଖାଇ ଦେଇ ଖଟରେ ଗଡ଼ଉଛ ଚଟଉଛ ହେଉଛନ୍ତି । ଜୁଆଙ୍କୁ ଧରି ତାଙ୍କ ସ୍ତ୍ରୀ ଆରଗାଁକୁ ନାଟ ଦେଖି ଯାଇଛନ୍ତି ତାଙ୍କ ଭଉଣୀ ଘରକୁ । ଯେମିତି ରାତି ନଶିବଦ ହୋଇଗଲା ଅଜା ତାଙ୍କ ଲମ୍ବା କଳା କୋଟ୍ ଖଣ୍ଡିକ ଗୋଡ଼ଠୁ ମୁଣ୍ଡଯାଏ ଘୋଷାଇ ଦେଇ ପିତଳ ଗୋବ ଦିଆ ଠେଙ୍ଗା ଖଣ୍ଡିକ ବାଡ଼େଇ ଧରି ସରୁ ନଡ଼ିଆ କତା ଦଉଡ଼ି ଖଣ୍ଡିଏ ଗୁଡ଼ାଇ ଅଣ୍ଟାରେ ଖୋସି ବଉଧୁଳି ବାଡ଼ି ପଛ ପଟକୁ ଚାଲିଲେ । ବାଡ଼ି ଶେଷ ମୁଣ୍ଡରେ ଝଙ୍କାଳିଆ ବାଉଁଶ ଲଟି ଭିତରେ ଲୁଚି କରି ବସିଲେ । ଚୋରଟା ଏଇ ବାଡ଼ପଟରୁ ଯିବ ନିଶ୍ଚୟ । ସେ ଟିକିଏ ଆଗେଇ ଗଲେ ପଛୁଆ ମାଡ଼ିବସି ପାହାରେ କସିଦେଇ ଦଉଡ଼ିରେ ଆଣ୍ଠୁକରି ବାନ୍ଧିଦେବେ ଯିବ କୁଆଡ଼େ । ସେଇଠୁ ଥାନାକୁ ଚାଲାଣ । ତାପରେ ଖବର କାଗଜରେ ତାଙ୍କ ବୀରତ୍ୱ କାହାଣୀ ଫଟୋ ସହ ପୁରସ୍କାର ଗ୍ରହଣ । କେତେ କଣ... ଅଜା ଆନନ୍ଦରେ କୁରୁଳି ଉଠିଲେ । ଓଃ ରକତ ଶୋଷା ମଶା ଗୁଡ଼ାକ ରକତ ଝୁଣି ପକାଉଛନ୍ତି । ମାରିବାକୁ ହାତ ଉଠୁନି ଆସି ରହିଯାଉଛି କାଳେ ଶବଦ ହେବ । ନାଁ । ଖାଆନ୍ତୁ ପଛକେ । ଟିକିଏ ହଲଚଲ ହେଲା-

ବେଳକୁ ବାଉଁଶ କଣ୍ଟା ଚୁଡ଼ା ଚପ୍ ଚାପ ଫୋଡ଼ି ହୋଇ ଯାଉଛି । ହଉ କଷ୍ଟ ପାଇଲେ କୃଷ୍ଣ ମିଳିବେ । ହଠାତ୍ କଣ ଗୋଟାଏ ଖସ୍ ଖସ୍ ଶବ୍ଦ ଶୁଭିଲା । ଅଜା ସତର୍କ ହୋଇଗଲେ । ଅଜା ଅନ୍ଧାରରେ କିଛି ଦେଖି ପାରୁ ନାହାନ୍ତି ଖାଲି କିଏ ଗୋଟିଏ ମସ୍ ମସ୍ ହୋଇ ଆଗକୁ ମାଡ଼ି ଗଳିଛି । ଅଜା ଚୁପ୍ ଚାପ୍ ଯାଇ ପଛଆଡ଼ୁ ନିର୍ଘାତ ପାହାରଟାଏ ଦେଲେ । ଅଜାଙ୍କୁ ଜଣାନାହିଁ ପଧାନ ଘର ଓଳିଆ ଷଣ୍ଢଟା ନିତି ଆସି ରାତିରେ ବାଡ଼ିରେ ପଶି ଫସଲ ଖାଏ । ସେମିତି ପାହାରଟା ବସିଛି କଳିକାଳିଆ ହୋଇ ବୁଲି ପଡ଼ି ଅଜାଙ୍କୁ ମାଡ଼ି ଚକଟି ଦେ ଦଉଡ଼ି··· । ଅଜା ତିନିଗଡ଼ା ଦେଇ ବାଉଁଶ ଲଟି ଭିତରେ ଫୋପାଡ଼ି ହୋଇ ପଡ଼ିଲେ । ଦେହ ସାରା କଣ୍ଟା ଫୋଡ଼ି ହୋଇ ଲହୁ ଲୁହାଣ । ଶବଦ ଶୁଣି ଘର ଲୋକେ ହୋ ହା ହୋଇ ଉଠିଲେ । ଦୁଇ ତିନିଟା ଟର୍ଚ୍ଚ ଲାଇଟ୍ ଧରି ଗୁହଆଡ଼େ ଖେଦିଗଲେ । ଗୋଳମାଳ ଶୁଣି ପାଖ ପଡ଼ିଶା ଘରମାନେ ମଧ୍ୟ ଉଠି ନିଦ ବାଉଳାରେ ହୈର, ହୈର ହେଲେ । ଗୁହଆଡ଼େ ଟର୍ଚ୍ଚ ଆଲୁଅ ପହଁରି ଗଲା । ବାଉଁଶ ବୁଦା ମୂଳେ କିଏ ଗୋଟାଏ ଲମ୍ବଦଣ୍ଡା ହୋଇ ପଡ଼ି କୁନ୍ଥଉଛି । ପୁଅଝିଅ ପାଞ୍ଚଟା ଧାଇଁ ଯାଇ ମାଡ଼ି ବସି ଘୋଷାରି ଆଣିଲେ । ଟର୍ଚ୍ଚ ମାରି ଦେଖିଲେ ଆରେ ଇଏ କିଏ ଗୋବଧା ଅଜା······ଗୁହଆଡ଼ ଖଣ୍ଡିଆ ଖାବରା ରକତ ଧାର ଛୁଟିଛି । ବହୁତ କଷ୍ଟରେ ଅଜାଙ୍କୁ ଶଗଡ଼ରେ ଲଦି ରାତି ରାତି ଡାକ୍ତର ଖାନା ନେଇଗଲେ । ହାତ ଗୋଡ଼ ପ୍ଲାଷ୍ଟର ଖୋଲୁ ଖୋଲୁ ଦୀର୍ଘ ତିନିମାସ ଲାଗିଲା । ସେଇ ଦିନଠାରୁ ଅଜା ଭୁଲରେ ଆଉ ଦିନେ ଗୋଇନ୍ଦାଗିରି କରିବେନି ବୋଲି କାନ ନାକ ମୋଡ଼ି ହୋଇ ଚାପୁଡ଼ା ମାରିହେଲେ ।



## ଅତି ଶୀଘ୍ର ପ୍ରକାଶ ପାଉଛି---

ଶ୍ରୀମତୀ ଚଙ୍କଜନୀ ଦାଶଙ୍କ ଲେଖନୀ ନିସୃତ

୧ । କାହାଣୀ ସଂକଳନ—"ଅଜାଙ୍କ ମଜା କାହାଣୀ"
(ଦ୍ୱିତୀୟ ଭାଗ)

୨ । ରମ୍ୟରଚନା ସଂକଳନ—"ପବ୍‌ଜତା ସୂର୍ପଣଖା"

୩ । କବିତା ସଂକଳନ—
"ଉନ୍ମୋଚନ କଲି ମୋର ତୃତୀୟ ନୟନ"

---

**Published by Gitanjali Publications, Kamakhyanagar Dhenkanal & Cover Printed at Tripathy Printers, Kamakhyanagar, Dhenkanal**